# ଉତ୍ସର୍ଗପତ୍ର ।

ସ୍ୱସ୍ତି ଶ୍ରୀମଦୁତ୍କଳମହୀମଣ୍ଡଳପ୍ରବଳପରାକ୍ରମ ଗଙ୍ଗବଂଶସାଗରସମ୍ବର୍ଦ୍ଧନଚନ୍ଦ୍ରମା ସାହିତ୍ୟବିସ୍ତାରବୃଦ୍ଧିକୃତେ · ତ୍କଳବୁଦ୍ଧିତାନ୍ଧକାର ଉତ୍କଳାକାଶନିଶାକର ଭୂମଣ୍ଡଳମଣ୍ଡନପଣ୍ଡିତବର ଶ୍ରୁତିସ୍ମୃତିପୁରାଣଦକ୍ଷାରଦକ୍ଷାନନ ଧରାଧାମଧାରିଧର୍ମପରାୟଣ କ୍ଷେମଶ୍ରୀମହୀପତି ଶ୍ରୀଶ୍ରୀଶ୍ରୀମଦ୍ଗଜପତି କୃପାମୟ ଅନଙ୍ଗଭୀମକେଶରୀ ଦେବ ବୀରବର୍ଯ୍ୟବର୍ମଣଃ ଶ୍ରୀଚନ୍ଦ୍ରବଦ୍ଧରଣାବ୍ଜିକ୍ରି-

କରକମଳେଷୁ

ଭକ୍ତିପୁରଃସରମୁତ୍କଳରତ୍ନସମର୍ପଣ ପୂର୍ବକ ନିବେଦନ

ମେତାବଦେବ-

ଶ୍ରୀମନ୍ମହାରାଜ !

ମୁଁ ପୂର୍ବରେ ଶ୍ରୀମୁଙ୍କ ନିକଟରୁ ସଂସ୍କୃତ 'ମାନସପ୍ରମାଦନୀ' 'ଅଲଙ୍କାରମୀମାଂସା' ଓ ଉତ୍କଳ 'ପଦ୍ମାବତୀପରିଣୟ' ନାମକ ସାହିତ୍ୟ ପୁସ୍ତକ ମାନ ପ୍ରେରଣ କରି ଯଥେଷ୍ଟ ପୁରସ୍କାର ପାଇଥିଲି । ସୁତରାଂ ସେହି ଉତ୍ସାହର ବଶବର୍ତ୍ତୀ ହୋଇ ଆଉ ଗୋଟିଏ "ଉତ୍କଳରତ୍ନ" ନାମକ ନୂତନ ପୁସ୍ତକ ପ୍ରଣୟନ କରିଅଛି । ଏଥିରେ ମୋର ବିଶେଷତ୍ୱ ବା ସ୍ୱତ୍ୱ କିଛି ନାହିଁ, କେବଳ ଭକ୍ତିମାତ୍ର ଅର୍ପଣ କରିବାକୁ ଶ୍ରୀମୁଙ୍କ ନିକଟରେ ଉପସ୍ଥିତ ହୋଇଅଛି ।

"ପ୍ରଦୀପଜ୍ୱାଳାଭିର୍ଦ୍ଦିବସକରନୀରାଜନବିଧିଃ,
ସୁଧାସୁତେଶ୍ଚନ୍ଦ୍ରୋପଳଜଳଲବୈରର୍ଘ୍ୟରଚନା ।
ସ୍ୱକୀୟୈରମ୍ଭୋଭିସ୍ସଲିଲନିଧିସୌହିତ୍ୟକରଣଂ,
ତ୍ୱଦୀୟାଭିର୍ବାଗ୍‌ଭିସ୍ତବଜନନି ! ବାଚାଂ ସ୍ତୁତିରିୟଂ"॥

ଶ୍ରୀପ୍ରଭୁ ଅନୁଗ୍ରହ କରି ମୋର ଏହି ଅକିଞ୍ଚିତ୍କର ଉପହାର ଗ୍ରହଣ କରିବା ହେଲେ ବହୁ ଉପକୃତ ହେବି ଓ ଶ୍ରମ ସାର୍ଥ ମନେ କରିବି । ଇତି ।

କୃପାକାଙ୍କ୍ଷୀ
ଶ୍ରୀଭଗୀରଥ ରଥଶର୍ମ୍ମା ।

# ଉତ୍କଳ ଚରିତ

## ଅଭିମତ ।

ପଣ୍ଡିତ ଶ୍ରୀଯୁକ୍ତ ଭଗୀରଥି ରଥ ମହାଶୟ ଉତ୍କଳ-ସାହିତ୍ୟକ୍ଷେତ୍ରରେ ଅପରିଚିତ ନୁହନ୍ତି । ସେ ତାଙ୍କ ପ୍ରଣୀତ ନୂତନ କାବ୍ୟ "ଉତ୍କଳ ଚରିତ"ର ପାଣ୍ଡୁଲିପି ଉତ୍କଳ ସାହିତ୍ୟ ସମାଜକୁ ପ୍ରେରଣ କରି ପୁସ୍ତକ ସମ୍ବନ୍ଧରେ ସମାଜର ଅଭିମତ ଜିଜ୍ଞାସୁ ହୋଇ ଥିଲେ । ସମାଜର ଦୁଇଜଣ ସୁଯୋଗ୍ୟ ସଭ୍ୟଙ୍କ ଉପରେ ପାଣ୍ଡୁଲିପି ପରୀକ୍ଷାର ଭାର ଅର୍ପିତ ହୋଇଥିଲା । ଉଭୟେ ପୁସ୍ତକ ସମ୍ବନ୍ଧରେ ଅନୁକୂଳ ମତ ବ୍ୟକ୍ତ କରି ଅଛନ୍ତି । ଅତଏବ ଉତ୍କଳ ସାହିତ୍ୟ ସମାଜର ମତରେ ପୁସ୍ତକଖଣ୍ଡି ସୁଲିଖିତ ହୋଇଅଛି ଏବଂ ଏହା ସର୍ବଥା ପ୍ରକାଶଯୋଗ୍ୟ ବୋଲି ବିବେଚିତ ହେଲା ।

କଟକ
୩।୧। ୧୯୧୦.

ଶ୍ରୀମଧୁସୂଦନ ରାଓ
ଉ: ସା: ସମାଜର ସଭାପତି

---

## ଉଦ୍ବୋଧନ ।

ଅନେକଦିନ ହେଲା ଜାତୀୟ ଚର୍ଚ୍ଚାର ଅଭାବ ବଶତଃ ଜାତୀୟ ମହାତ୍ମା ମାନଙ୍କର ଜୀବନଚରିତ ବିସ୍ମୃତି ଗର୍ଭରେ ପଡିଯାଇ ଅଛି, ଯଦ୍ୟପି, ତଥାପି ସେମାନଙ୍କର ପ୍ରଶସ୍ତି ପ୍ରଭୃତି ସାମୟିକ ଲିପି ଆଲୋଚନା କଲେ ଅନେକ ଆଭାସ ମିଳିଥାଏ, ଅତଏବ ସେହି ସମସ୍ତ ଉପରେ ନିର୍ଭରକରି ଉତ୍କଳ ଚରିତ ରଚିତ ହୋଇଅଛି ।

ଉନବିଂଶଶତାବ୍ଦୀୟ ଐତିହାସିକ ଏବଂ ପ୍ରତ୍ନତତ୍ତ୍ୱ-

ବହୁ ପଣ୍ଡିତମାନଙ୍କର ମତ—ଦାରୁବ୍ରହ୍ମମୂର୍ତ୍ତି ବୌଦ୍ଧମା-ନଙ୍କର ଉପକରଣରେ ପ୍ରସ୍ତୁତ, ଏହାର କାରଣ, ୧ମ ବୁଦ୍ଧ, ଧର୍ମ, ସଂଘ, ଏହି ଯନ୍ତ୍ରର ସହିତ ଦାରୁ ମୂର୍ତ୍ତି-ମାନଙ୍କର ଆକାରଗତ ସାଦୃଶ୍ୟ, ୨ୟ ଏଠରେ ବୁଦ୍ଧଦନ୍ତର ଅଧିଷ୍ଠାନ ଓ ଅଦ୍ୟାବଧି ଜଗନ୍ନାଥ ବିଗ୍ରହରେ ବିଷ୍ଣୁପଞ୍ଜରର ଅବସ୍ଥାନ ପ୍ରବାଦ, ୩ୟ ପୁରୀର ରଥଯାତ୍ରା ପରି ତାତାର ଦେଶର ଅନ୍ତର୍ଗତ ଖୋଟାନ ନଗରର ରଥଯାତ୍ରା, ଅର୍ଥାତ ଠିକ୍ ଏହିସ-ମୟରେ ନବଦିନାବଧି ରଥ ଉପରେ ବୁଦ୍ଧମୂର୍ତ୍ତିର ଉ-ଭୟ ପାର୍ଶ୍ୱରେ ବୋଧିସତ୍ତ୍ୱ ରଖା ଯାଇ ରଥୋତ୍ସବ କରାଯାଉଥିବା, । ୪ର୍ଥ ବର୍ଣ୍ଣ ବିଚାର ବର୍ଜ୍ଜନପ୍ରଥା ହିନ୍ଦୁମତ ବିରୋଧି ବ୍ୟବସ୍ଥା, ୫ମ ଦଶାବତାର ମ-ଧ୍ୟରେ ବୁଦ୍ଧମୂର୍ତ୍ତି ପରିବର୍ତ୍ତରେ ଜଗନ୍ନାଥ ପ୍ରତିମାର ପ୍ରତିଷ୍ଠା, ୬ଷ୍ଠ ଅରଙ୍ଗାବାଦର ଅନ୍ତର୍ଗତ ଇଲୋରାର ଉତ୍କୃଷ୍ଟ ବୌଦ୍ଧ ଦେବାଳୟର ନାମ ଜଗନ୍ନାଥ, ୭ମ ବୌଦ୍ଧତୀର୍ଥ ବୁଦ୍ଧଗୟା ହିନ୍ଦୁକ୍ଷେତ୍ର ରୂପେ ଗ୍ରହଣ। ଅତଏବ ସେମାନେ ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଅଛନ୍ତି ଯେ ବୌଦ୍ଧ ଧର୍ମ ଚଳିକୁ ମହାରାଜ ଯଯାତି ସାଧାରଣଙ୍କର ବିଶ୍ୱାସ ଅକ୍ଷୁନ୍ନ ରଖିବା ମାନସରେ ଦାରୁବ୍ରହ୍ମରୂପରେ ଗ୍ରହଣ କରିଥିଲେ, ସେହି ସମୟରେ ପ୍ରାଚୀନ ବୌଦ୍ଧ ସ୍ତୂପ ହିନ୍ଦୁମାନଙ୍କର ପ୍ରଧାନ ଅଧିଷ୍ଠ ଦେବତା ହେଲା, ଏବଂ ଜଗନ୍ନାଥ କ୍ଷେତ୍ରମାହାତ୍ମ୍ୟ ପ୍ରକା-ଶକ ପୁରାଣାଦି ମଧ୍ୟ ରଚିତ ହୋଇଥିଲା। ଉକ୍ତ-ଚରିତରେ ଉପରୋକ୍ତ ମତ ଓ ମାଦଳାପାଞ୍ଜି ଗୃହୀତ

ବା ବର୍ଣ୍ଣିତ ହୋଇନାହିଁ । ତାହାର କାରଣ ନିର୍ଦ୍ଧ୍ୟମତ ଏବଂ ମାଦଳା ସମସ୍ତ ସାମୟିକ ପୁରାଣ ବା ସାମୟିକ ଇତିହାସ କିଛି ସାମଞ୍ଜସ୍ୟ ରକ୍ଷା କରିପାରି ନାହିଁ । ନାରଦ, ବ୍ରହ୍ମ, ସ୍କନ୍ଦପୁରାଣାନ୍ତର୍ଗତ ଉତ୍କଳଖଣ୍ଡ, କପିଳ-ସଂହିତା ପ୍ରଭୃତ ପୁରାଣରେ, ଚୈତନ୍ୟ ଭାଗବତର ଦ୍ୱିତୀୟ ଅଧ୍ୟାୟରେ ଏବଂ ଚୈତନ୍ୟଙ୍କର ଖଣ୍ଡନ-ଚରିତରେ, ଜଗନ୍ନାଥଙ୍କର ଚତୁର୍ଦ୍ଧବ୍ରହ୍ମାଦି ବର୍ଣ୍ଣିତ ହୋଇଅଛି । ସୁତରାଂ ରାଜା ପ୍ରତାପରୁଦ୍ରଙ୍କର ରାଜତ୍ୱ ପର୍ଯ୍ୟନ୍ତ ରହସ୍ୟ ହ୍ୟାସନରେ ପୌରାଣିକ ; କିନ୍ତୁ ପ୍ରତିମା ବିଗ୍ରହମାନ କରୁଥିଲେ । ନାରଦାଦି ଗ୍ରନ୍ଥସମ୍ବନ୍ଧରେ ଲୋକନାଥଙ୍କର ନାମୋଲ୍ଲେଖ ନାହିଁ । ମୋହ ନୀଳାଦ୍ରିମହୋଦୟରେ ଅଛି । ଅତଏବ ସ୍ୱୀକାର କରି-ବାକୁ ହେବ ଯେ ନୀଳାଦ୍ରିମହୋଦୟ ଅଭିନବ ଗ୍ରନ୍ଥ । —

ଏହି ନବୀନ ଗ୍ରନ୍ଥରେ ଦାରୁବ୍ରହ୍ମଙ୍କର ନବକଳେବର ବିଧାନ ସମ୍ବନ୍ଧରେ ଅଭିନବ ସୃଷ୍ଟି କଳ୍ପନା କରାଯାଇ ଅଛି । ସମ୍ଭବତଃ ଭୋଇ ବଂଶର ପ୍ରଥମ ରାଜା ରାମଚନ୍ଦ୍ରଦେବଙ୍କ ସମୟରେ କୁଜଙ୍ଗରୁ ଦାରୁମୂର୍ତ୍ତି ଅଣାଯାଇ ସାଧାରଣଙ୍କ ବିଶ୍ୱାସ ଅକ୍ଷୁନ୍ନ ରଖିବା ମାନସରେ ନାନା ବିଧ କଳ୍ପନା କରାଯାଇ ଥିବ । ଏପରି ଅବସ୍ଥାରେ ବୌଦ୍ଧଧର୍ମ-ତତ୍ତ୍ୱ ସହିତ ଶ୍ରୀମୂର୍ତ୍ତିମାନଙ୍କର କି ସମ୍ବନ୍ଧ ରହିଲା ? ମହାରାଜ ଯଯାତିକେଶରୀ ଯେବେ ଜଗନ୍ନାଥ ଦେବଙ୍କର ବିଧାତା, ତାହାହେଲେ ତା-ହାଙ୍କ ପୂର୍ବରୁ ଯବନମାନଙ୍କ ଭୟରେ ଶ୍ରୀମୂର୍ତ୍ତିମାନଙ୍କୁ ଶ୍ରୀକ୍ଷେତ୍ରରୁ ଶୀନପୁର (ଶିବଗୁପ୍ତ)ଯେ ଘେନି ପଳାଇ

ଯାଇଥିଲେ ଏବିଷୟ ବିପ୍ରକାର ସୁସଙ୍ଗତ ହୋଇପାରେ ?

ବୌଦ୍ଧ, ଶବର, ଯଯାତି ରାଜତ୍ୱଠାରୁ ଯେ ଦାରୁ-ବ୍ରହ୍ମ ପ୍ରାଚୀନ, ଏହାର ପ୍ରମାଣ ନାରଦ ଓ ବ୍ରହ୍ମପୁରାଣ, କାରଣ ଉକ୍ତ ପୁରାଣରେ ଶବରକୁଳ ଦେବିଷ୍ଣୁଙ୍କ ପ୍ରତିମା ପୂଜା, ଇନ୍ଦ୍ରଦ୍ୟୁମ୍ନଙ୍କ ଦେବାଳୟର ବାଲୁକାରେ ଆଚ୍ଛାଦନ, ଗାଲ୍ଲିସରଭିତ ବିବାଦ ଏବଂ ମହାପ୍ରସାଦ ଦୃଷ୍ଟାନ୍ତ ଏଣାହିଁ । ମାତ୍ର ଉତ୍କଳଖଣ୍ଡ କପିଲସଂହିତା-ଦିରେ ଦେଖା ଯାଏ ।

ଅତଏବ ଉତ୍କଳ ତଟରେ ମହାଭାରତୋକ୍ତ ସାଗରଶ୍ରେଷ୍ଠିତ ପୀଠ ଉପରେ ଶାଙ୍ଖ୍ୟାୟନ ବ୍ରାହ୍ମଣ-ଲଗିତ ଦାରୁବ୍ରହ୍ମପ୍ରତିଷ୍ଠା, (ଅଦୋ ଯଦ୍ଦାରୁଃ ପ୍ଲବତେ ସିନ୍ଧୋଃ ପାରେ ଅପୁରୁଷମ୍ । ତଦାଲଭସ୍ୱ ଦୁର୍ହଣୋ ତେନ ଯାହି ପରଂସ୍ଥଲମ୍) ବୌଦ୍ଧଗ୍ରନ୍ଥାନୁସାରେ ବୌ-ଦ୍ଧଙ୍କଙ୍କର, ଖିରପୁର-ଶିଳାଲିପି ଅନୁସାରେ ଶ-ବରଙ୍କର, ବ୍ରହ୍ମେଶ୍ୱର ଶିଳାଲିପି ଅନୁସାରେ କେଶରୀଙ୍କର ଓ ଦ୍ୱିତୀୟ ନରସିଂହ ଦେବଙ୍କ ତାମ୍ରଫଳକ ଅନୁଯାୟୀ ଗଙ୍ଗଙ୍କର, ତତ୍ପରେ ମୁସଲମାନ ଇତିହାସ ସହିତ ମାଦଳାପାଞ୍ଜିର ସାମଞ୍ଜସ୍ୟ ଥିବାରୁ ତତ୍ତ୍ୱ ଗୃହୀତ ହୋଇ ଅଛି । ଅଥଚ ମାଦଳାର ପ୍ରଥମାଂଶ ପୂର୍ବୋକ୍ତ ସାମଗ୍ରିକ ଲିପି ସହିତ ମିଳିତ ନହେବାରୁ ପରିତ୍ୟକ୍ତ ହେଲା । ଆଶା କରେ ଉତ୍କଳତତ୍ତ୍ୱ ଐତିହାସିକ କାବ୍ୟ, ସୁତରାଂ କାବ୍ୟଦୃଷ୍ଟିରେ ପୂର୍ବାପର ସମ୍ବନ୍ଧ ସଙ୍କାଶେ କ୍ୱଚିତ୍ କଳ୍ପନାସୃଷ୍ଟି ସହୃଦୟ ଗୋଷ୍ଠୀରେ ଦୂଷଣୀୟ ହେବ ନାହିଁ । ବହୁନାଲଂ ।

# ଉତ୍କଳ ଚରିତ ।

## ପ୍ରଥମ ସର୍ଗ ।

### ରାଗ ରାମକେରୀ ।

ସାଗର ସଲିଳଶଯ୍ୟାରେ ଥିଲା ଯେ ନୀଳାଚଳ ,
ନୀଳ ମଣି ମସୃ ପ୍ରାଙ୍ଗଣେ ଯଥା ସ୍ତୂପ କଜ୍ଜଳ ।
ଯାହାଦରେ ଗଣ୍ଡ ସହସା ଚେଷ୍ଟ ଭେଦ ଲହରୀ ,
ମିଶଇ ଅନନ୍ତ ଗର୍ଭେ ମୁକ୍ତଜୀବନସତ୍ତ୍ୱ ।
ଶୀକର ଶୀତଳ ପବନେ ବୃକ୍ଷଲତା ଗୁଳ୍ମ ,
ବନସ୍ଥଳେ ସଦାଶ୍ରୀରେ ଯହିଁ ଫଳ କୁସୁମ ।
ବିତାନ ଅଗ୍ରାରେ ବାରିଦ ଉଦେ ହେଲେ ଯେମିତି ,
ନୀର ଅମ୍ବରଣ ମଧ୍ୟରେ ଧରେ ସ୍ତମ୍ଭ ଶିଖୀ ।
ଅସିନ୍ଧୁ ସଲିଳ ପ୍ଳାବନେ କଳ୍ପବଟ ପାଦପ ,
ଉଠିଯାଉ ଚୂଳେ ଲଙ୍ଘିଲ ଘୋରପ୍ରଳୟ ଅପ ।
ଯେଉଁଠି କନ୍ଦରା କୁଣ୍ଡରେ ଅଂଗାଢ଼ ଭୂଷଣ ,
ଚତୁର୍ଭୁଜଙ୍କ କୃପେ ସପତ— କଳ୍ପ ଜୀବୀ ମାର୍କଣ୍ଡ ।
ନୀଳମଣି ମଣ୍ଡ ମାଧବ ବିପିଯାହାଟଣିରେ ,
ବନ୍ଧିଲେ ଉତ୍କଳ ବକ୍ଷକୁ ମୋକ୍ଷଧାମ ମହୀରେ ।
ଅହମି କା ତାପ ଉତ୍ତପ୍ତ ନରତରଳ ମତି ,
ସାଗର ସଲିଳ ଦର୍ଶନେ ଯାଏ ସଙ୍କୋଚ ଅତି ।
ଏଥିପାଇଁ ଧୂତ ଆରତୁଁ ଶାନ୍ତି କେତେ ତପସ୍ୱୀ ,
ଅଛି ଥିଲେ ଯାଇ ଶିଖର ତାପନଦ୍ୟୁ ବଧ୍ୟଂସୀ ।

ଡୁବିଲା ଜଳଧର ପ୍ରକାଣ୍ଡ   ଦେଲା ଦେଗିରି ଶିଳ
କେବଳ ରହିଲା ପଞ୍ଚନ୍ଦ   ବଟ, ପୀଠ, ନଗିରି ।
ପ୍ରଳୟର ସାକ୍ଷୀ ଉତ୍ତରରେ   ଅଛି ପ୍ରଳୟ ଖମ୍ଭା, [୧
ଦର୍ଶିତ ମହାଭାରତେ   ପୀଠ ସାଗର ତନ୍ମା! (୨)
ପୀଠ ଚତୁର୍ଦ୍ଦିଗେ ଉଠିଲା   କ୍ରମେ କ୍ରମେ ସୈକତ,
ଗ୍ରୀଷ୍ମଶେଷେ ନୀଳ ଆକାଶେ   ଶୁକ୍ଳ ବଉଦ ବତ୍ତି ।
ବୃକ୍ଷ-ଲତା-ଗୁଳ୍ମ କୁଳରେ   ଦ୍ୱୀପ ହେଲା ସଙ୍କୁଳ,
ବାସ ଯୋଗ୍ୟ ଯୋଗୁଁ ଜନ୍ତୁଏ   ଯହିଁ ହୋଇଲେ ଠୁଳ ।
କାଳ ଚଉଦ୍ଦିଗେ ଚହଟି   ଯହିଁ କ୍ଷେତ୍ର ମହିମା,
ଧାଇଁଲେ ମାଳବ ମଗଧ   ଲଙ୍ଘି ସ୍ୱଦେଶ ସୀମା ।
କପୂର ବାହିନୀ ସହିତେ   ଅସି ସାଗର ତୀରେ,
ଦେଖିଲେ ଅନନ୍ତ ଶାନ୍ତିକୁ   ମୂର୍ତ୍ତିମତୀ କ୍ଷେତ୍ରରେ ।
ଅର୍ଜୁନ, ଅଶୋକ, ପୁନ୍ନାଗ,   ତାଳ, ହିନ୍ତାଳ, ଶାଳ,
ବିଲ୍ୱ, କୋବିଦାର, ସରଳ   ଦେବଦାରୁ, ପିଆଳ,

---

[୧] ପୁରୀର ଉତ୍ତରସ୍ଥ ବାଲିଘାଇ ନିକଟରେ ପ୍ରଳୟ ଖମ୍ଭା ନାମକ ଗୋଟିଏ ଦେବସ୍ଥାନ ଅଛି ।

(୨) "ତତଃ ପ୍ରପନ୍ନା ପୃଥ୍ୱୀ ତପସା ତସ୍ୟ ପାଣ୍ଡବ
ପୁନରୁନ୍ମଜ୍ୟ ସଲିଲାଦ୍ୱେଦୀରୂପା ସ୍ଥିତାବଭୌ ॥
ସୈଷା ପ୍ରକାଶତେ ରାଜନ୍ ବେଦୀ ସଂସ୍ଥାନ ଲକ୍ଷଣା,
ଆରୁହ୍ୟାତ୍ର ମହାରାଜ ! ବୀର୍ଯ୍ୟବାନ୍ ବୈ ଭବିଷ୍ୟତି" ।

ଅର୍ଥ— ପୃଥିବୀ ତପଃ ପ୍ରଭାବରେ ପ୍ରସନ୍ନା ହୋଇ ବେଦୀ-ରୂପରେ ସଲିଳରୁ ଉତ୍ଥିତ ହେଲେ । ମହାରାଜ ! ଏ ସେହି ବେଦୀ ଦେଖାଯାଉଅଛି ଏଥିରେ ଆରୋହଣ-କଲେ ଆପଣ ବୀର୍ଯ୍ୟବାନ୍ ହେବେ ।

ଲୋଧ୍ର, ଧବ, ନାଗକେଶର, ନାରିକେଳ, ଚମ୍ପକ,
ଖଦିର, ପଳାଶ, କପିତ୍ଥ, ଜମ୍ବୁ, ମାତୁଳଙ୍ଗକ,
କଦମ୍ବ, ବକୁଳ, ରସାଳ, ନାଗରଙ୍ଗାମଳକ,
ଜମ୍ବୀର ମନ୍ଦାର ବକୁଳ ପାରିଜାତ ଗୁବାକ,
ଖର୍ଜ୍ଜୁର, ନ୍ୟଗ୍ରୋଧ, ଚନ୍ଦନ, ମୁଚୁକୁନ୍ଦ, କିଂଶୁକେ
ମାଳତୀ, ମାଧବୀ, ଶେଫାଳୀ ଅଦଳଭାଅଂଶୁକେ,
ଅଚ୍ଛାଦ ଶାଖାରୁ ଶାଖୀଏ ରମ୍ୟମଣ୍ଡପାକାରେ,
ସେବୁଛନ୍ତି ସଦା ତାପସେ ପରଣମିଅଗାରେ ।
ବ୍ୟାଘ୍ରଚର୍ମ୍ମ, କମ୍ବା କମ୍ବଳ, କମଣ୍ଡଳୁ, ସମ୍ବଳ,
ଧ୍ରୁବମାପ ସ୍ୱଏ ଯା ମୂଳେ ଧ୍ୟାନେ ମହର୍ଷି ଦଳ ।
ଯୂଥଯୂଥ ହୋଇ ସଲିଳ ପିଇବାକୁ ପଲ୍ୱଳେ,
ପ୍ରେମନ୍ତି ରଚନା କରନ୍ତି ଏଣୀସକତାଷ୍ଣଳେ ।
ଫଳମୂଳଲଗି ମୁନିଏ ଭ୍ରମୁଭ୍ରମୁ କାନନେ,
ଅନେ୍ୟାନ୍ୟ ସନ୍ଦେଶ ଜଣାନ୍ତି ତାଙ୍କ ସଙ୍କେତ ସ୍ୱନେ ।
ବିଜନ ଅରଣ୍ୟ ପ୍ରାନ୍ତରେ କାରକାଳ ପ୍ରାଚୀର,
ପୁଳିନର ପାଦ ପ୍ରକ୍ଷାଳେ ମାଉଳ ଦ୍ୱୀପୀ ଶିର ।
ଅନନ୍ତ ଅପାର ସାଗର — ନିରନ୍ତର ଗର୍ଜ୍ଜନ,
ଶୁଣି ମନ ଉଠେ ଅଣୁରି ମଣି ଦ୍ୱିଭୁତର୍ଜ୍ଜନ ।
ଭୀମସୌମ୍ୟ ଶ୍ୟାମ କାନ୍ତାର — ଗର୍ଭେ ସୈକତସ୍ତୂପ,
କଳ୍ପବଟେଶ୍ୱର ସ୍ୱଦେହ ଦଣେ ଗିରିସ୍ୱରୂପ ।
ଅସି ପ୍ରମାଦରେ ବେଷ୍ଟିବେ ସଙ୍ଗେନେଇ ନୃପତି,
ଲେଉଟ କରାଇଲେ ପୀଠକୁ ବଟମୂଳେ ଟୁଟଭ ।
ସର, ସମ ଗଗ ସମୁଦ୍ର ହିମୋନ୍ନତ ସୈକତ,
ଉଦ୍ଧ୍ୱ ଦଶ ଟେ ବେଦୀ ଅନ୍ତ୍ୟାନ୍ତେ ପୂର୍ଣ୍ଣଚନ୍ଦ୍ରମାବକ୍ରୁ ।

ଯେପରି ଏ ପୀଠ ସ୍ମରଣେ   ପୂତ ଭୂପତିଶିର ,
ବୈଷ୍ଣବୀ ପ୍ରତିମା ନବେଣୀ   ଦୁଃଖେ ହେଲ ଅସ୍ଥିର ।
ଏବେ ଅସ୍ତ ଗାମି -ଅରୁଣ—   କରେ ପୀଠ କମଳ ,
ସେହି ପ୍ରେମେ ହେଲ ଅରକ୍ତ   ଧନ୍ୟ ବିଭୁସମ୍ବଳ ।
ସନ୍ଧ୍ୟାରେ ଉତ୍ତେ ଅମ୍ବର   ନେଷ୍କଦେଶ ଭାସ୍କର,
ସନ୍ତରଣ କଲ ସାଗରେ   ଯଥା ରକ୍ତ ପୁଷ୍କର ।
ମକର ଆଲୟେ ଭାସ୍କର   କ୍ରମେ କ୍ରମେ ମଗନ ,
ପ୍ରିୟଦଶା ଦେଖି ବୁଡ଼େଇ   ଦିନଲକ୍ଷ୍ମୀ ବଦନ ।
ବାରୁଣୀ ଅଙ୍ଗନା ପ୍ରାଙ୍ଗଣେ   ଅନୁରକ୍ତ ଅରୁଣ ,
ସାଗର ଅଗାରେ ନେଲେ ବା   ପାଶେ ବାନ୍ଧି ବରୁଣ ।
ଚତୁର୍ଦ୍ଦିଗୁଁ ଖଗେ ଆସିବ   ପଡ଼ି ବଟ ଶିଖରେ
ବସିଲେ ଖଗକୁ ( ୧ ) ଦେଖିବା ଲାଗି କି ବା ଦୁଃଖରେ
ରବି-ବିୟୋଗିନୀ ପଦ୍ମିନୀ   ଦୁଃଖେ ହେଲ ବିମୁଖ
ତଥାପି ମଧୁପ ତାପାଶେ   ଲୋଡ଼େ କୋଡର ସୁଖ ।
ଅମ୍ବରେ ଶୁକ ପକ୍ଷୀ ଏ   ବିଭୁନାମ ଘୋଷିଲେ ।
ଚକ୍ରବାକ ଚକ୍ରବାକୀ ଏ   ସନ୍ଧ୍ୟା ଦେଖି କାନ୍ଦିଲେ ।
ରବି ଦୁଃଖ ଦେଖି ଉହୁଁ ହୁଁ   ଯହୁଁ କଲ କପୋତ ;
ସେହି ଧ୍ୱନିଧରେ ବିପକ୍ଷ   ଖଳ କୌଶିକ ପୋତ
ସେତେବେ ସନ୍ଧ୍ୟାରକ୍ତକ ମଳ   ଚକ୍ରବାକ ହସିଲା ;
ସାନ୍ଧ୍ୟ-ରଙ୍ଗ ମେଘ ଛଳେକି   ଦିଗଙ୍ଗନା ରୁଷିଲା
କ୍ରମେ କ୍ରମେ ପୂର୍ବ ଦିଗସ୍ଥା   ଛୁଟି ଅକାଶ ମହୀ ,
ଛାଡ଼ିଦେଲ ଭେକ ଯେସନେ   ଗଙ୍ଗା ଯମୁନା ବହି ।
ଗୋଟିଗୋଟି ହୋଇ ଫୋଟିଲେ   ନଭେ ତାରକା ପନ୍ତି ,
କଳିନ୍ଦନନ୍ଦିନୀ ସ୍ରୋତରେ   ଯଥା କଇରବ ତତି ।

---

(୧) ସୂର୍ଯ୍ୟ

ମାଝ ଚଉଦ୍ଦଶ ରଜନୀର, ପୁଣି ପ୍ରାଚୀ ବଦନ,
ଶୋଭିଲା ଯେମନେ ଦୁର୍ଦ୍ଦିନେ ଉଡ଼ଅଛିଲା ଘନ ।
କ୍ଷୀଣ-ଶଶି-ଦ୍ୟୁତି କ୍ଷଣକେ ପ୍ରାଚୀ ପ୍ରାଙ୍ଗଣେ ଅସି,
ଅଭାସିଲା ଯଥା ଯମୁନା— ଜଳେ ଜାହ୍ନବୀ ଭାସି ।
ସାଗର ଲହରୀ ଶିଖରେ ଶଶିକଳା ଭାସିଲା,
ପ୍ରାଚୀ ତରୁଣୀର ଅଳକରେ ଚୂଡ଼ାମଣି ଶୋଭିଲା ।
କ୍ରମେ କ୍ରମେ ପୁଣି ସିନ୍ଧୁରେ ଭାସି ସମ୍ପୂର୍ଣ୍ଣ ଇନ୍ଦୁ,
କ୍ଷୀରର ପିଣ୍ଡ ପରାଏ ଲଙ୍ଘି ଗଗନ ସିନ୍ଧୁ,
ଚନ୍ଦ୍ରିକା ଚର୍ଚ୍ଚିତ ଅମ୍ବର ଦିବ୍ୟ ପ୍ରକୃତ ଦେଖି,
କଲେ ଶାନ୍ତ ମନ୍ତ୍ର ପ୍ରଚାର ବନ୍ଧୁ ଚରଣେ ସେବି ।
ଅବଶେଷ ଜଟା ଜୁଟିତ କଳ୍ପବଟ ପାଦପ,
ଜ୍ୟୋତ୍ସ୍ନାମୟ ଭସ୍ମ ମାଖିଲା ମନେ କରିବ ତପ ।
ଇତର ତରୁଏ ତାପାଶେ ଅନେ୍ତବାସି ସ୍ୱରୂପ,
ସ୍ୱଛଳେ ଶୋଭି ଦଣ୍ଡେ ନଶବେ, ଦେଖିମାଳବ ଭୂପ ।
ତାପସ ସମିତ ବସାଇ କଲେ ଧର୍ମ୍ମ ଚରଚ୍ଚା,
କୋଜାଗର ଯୋଗେ ଜାଗିଲେ ତେଜି ନିଦ୍ରା ଅରଚା ।
ତାପସେ ଭଣିଲେ ଧୀରରେ ଯେତେ ନୃପତି ତରୁ,
ଧରାଧୀପ ସିନା ସେସବୁ ଜାତଧର୍ମ୍ମ ସାଗରୁ ।
ତଟିନୀ ପ୍ଲାବନେ ପୟୋଧି— ବୃଦ୍ଧି ସ୍ୱଭାଏ ଧର୍ମ୍ମ,
ଅନୁମାନଙ୍କର ହେ ଭୂପ, ସାଧ ସର୍ବଦା କର୍ମ ।
ମୀନ ସମ ଭୋଗ ସାଗରେ ବୁଡ଼ ଶୂଦ୍ରେ ଯେଅର୍ଥ
ସ୍ୱଛରଣଶାଳୀ ପଶୁରୁ ମଣୁ ସେତ ଅଧମ ।
ସର୍ବ କାମ ପ୍ରସୂ ଧର୍ମ୍ମକୁ ତେଜିକାମ ବିଷୟେ,
ମତହୋଇ ହତ ହୁଅନ୍ତି କ୍ଷତ ହେଲେ ଉଦୟେ ।

ଅପସ୍ମାରୁଁ ବଳି ବଢ଼ବ  ଉତପତ୍ତି ଉନ୍ମାଦ ,
ମାନଲେ ଅଙ୍ଗ ଚାଳନ୍ତୁ  ଜାଣୁ ଜାଣୁ ପ୍ରମାଦ ।
ଚଞ୍ଚଳା କହେବ ଅଚଳା  ପୁଣି ଧ୍ରୁବ ଯୌବନ ,
ମନେ ନାହିଁ ଧର୍ମ କଅବା  ହତ ହେବ ଶମନ ।
ମହାକାଳ ସମ ଅସାର  ମଣି ସଂସାର, ଯାନ ,
ଭୁଲନା ଭୁଲନା ପଙ୍କଂଳ— କୁଫୁଁ ନାହିଁ ନିସ୍ତାର ।
ଚଉରାଶି ଲକ୍ଷ ଶରୀର –  ମଧ୍ୟେ ସ୍ୱରଗ ଏକା ,
ମଣେ ମାନବ ଜନମ  ଯହିଁ ଧର୍ମର ଦେଖା ।
ଧର୍ମ ସୋପାନର ସମୀପେ  ଅଛି ସ୍ୱର୍ଗସମ୍ପଦ ,
ଛାଡ଼ିଲେ ପଡ଼ିବ ନରକେ  ପିଇ ବିଷୟ ମଦ ।
ତେଣୁ ଧର୍ମବିରୋଧି ବିଷୟେ  ତେଜ ସାଧ ସମାଧି ,
ସିଦ୍ଧିର ସେତୁଡ ଲୌହନ୍ତା  ବଢୁ ସ୍ୱର୍ଣ୍ଣ ତା ଅଧି "।
ତପୋଧନ ବାଣୀ ଶ୍ରବଣେ  ଶାନ୍ତ୍ରର ସେ ଅପ୍ଲୁତ ,–
ଭାଷିଲେ ବୈରାଗ୍ୟ ଭୂପତି  "ତୁମ୍ଭ ମତ ତରତ ।
ସଂସାରର ସାର ଯେ ମୋର  ଭ୍ରାନ୍ତି, ଘ ମନା ପୂର୍ବ ,
ଛୁଡ଼ ବୋଲଦନେ ବୋଲବେ  କର୍ତ୍ତି ମମତା ସୁଦ ।
ସ୍ୱାର୍ଥ ବିନା ଭବେ ବଲ୍ଲଭ  କେବେ ନୁହେ ପରାର୍ଥ ,
କାନ୍ତିହୀନ ହେଲେ ଚନ୍ଦ୍ରମା  କରେ ରବି ସାକ୍ଷାତ ।
ଲୁଣ୍ଠ ଟର ପ୍ରାପ୍ତେ ମୋ ମୁଣ୍ଡେ  ମଣ୍ଡି ପ୍ରଜା ମୁକୁଟ ,
କୁଞ୍ଜରନ୍ତ୍ର ଶାନ୍ତ ମୁଁ ମୂଢ଼  ଭୁଞ୍ଜେ ଅଶାନ୍ତ କଣ୍ଟ ।
ପରମାର୍ଥ ପାଇଁ ଫିଙ୍ଗିବ  ପ୍ରଜାଭାର ମୁକୁଟ ,
କଣ୍ଠପାପ୍ୟେ ଯୋଗେ ବସିବ,  ବାନ୍ଧ ମୁକୁଟା ଜୁଠ" ।
କହସି ତାପସେ ହସିଲେ  ଖୀରପକ୍ୱ ରସାଳ ,
ବିଷୟ ରସକୁ ବର୍ଜିବ,  ତବ ତରୁଣ କାଳ ।

ଖେଳେ ଯହିଁ ସଦା ଅନଙ୍ଗ ଘେନି ନାଗକାମିନୀ,
ପୁଣି ଯାର ଭାଗ୍ୟେ ଘଟିଛି ସ୍ୱର୍ଗ ଲକ୍ଷ୍ମୀସଙ୍ଗିନୀ ।
ଏଣୁହେ ନରେନ୍ଦ୍ର ଯୌବନେ କୀର୍ତ୍ତି, କ୍ଷିତି ପ୍ରତାପ,
ଗୁଣଗଣ ଅର୍ଜି ବାର୍ଦ୍ଧକ୍ୟେ ଯୋଗେ କର ବିଯାପ" ।
ତପି ବାଣୀକଣ୍ଠ କୁହରେ ଅମୃତ ବଚନ,
"ତୃଣ ଶିଖାନୀର ସମାନ ମାନବର ଜୀବନ ।
ପିଂଗୁଳା ସଙ୍ଗେ କମଳା ପୁଣି ଯୁବତୀ ଜନ,
ଅଗ୍ନି ଶିଖା ସମ ଶେଷରେ ନାହିଁ ପାନ୍ଥ ସ୍ୱଜନ ।
ଚପଳା ଚପଳ ଯୌବନ;- ପରେ ପୁଣି ସ୍ଥାବର,
ଉପନୀତ ହେବା ମାନବ— ଭାଗ୍ୟେ ଅଛିକି ସ୍ଥିର ?
ସନ୍ଧ୍ୟା ପରି ବିନା ସୁନ୍ଦରୀ ବନ୍ଧେ କ୍ଷଣିକ ରାଗ,
ମୁକ୍ତି ବଧୂ ପରହେବଙ୍କ ଦେଖି ବନ୍ଧୁ ବିରାଗ" ।
କହନ୍ତ ବନ୍ଦେ ନରେନ୍ଦ୍ର ମୁନି ପୁଣି ଭାଷିଲେ,
"ନୃପ ପକ୍ଷେ ତପ ଅସାଧ୍ୟ ସରେ ନାହିଁ କହିଲେ ।
ଗୀତ ସ୍ତବ, ଉଷ୍ଣ ବସନ, ତପ୍ତ ବାରି ସେଚନ,
ତୁଳିକା ପର୍ଯ୍ୟଙ୍କ, ହେମନ୍ତେ ତପେ ନାହିଁ ସୃଜନ ।
ଚନ୍ଦ୍ରଶାଳା, ଚନ୍ଦ୍ର, ଚନ୍ଦନ, ବନକେଳି, ରମଣୀ
ଗ୍ରୀଷ୍ମ ସାଗରର ତରଣୀ କାହିଁ ଏଥି କମଣି ।
ବର୍ଷାରେ ବାଦନ ନିସ୍ୱନ— ନର୍ତ୍ତକୀକେକି-ମିଥୁନ,
ଯୁବତୀ ସଙ୍ଗୀତ ଚେତକ ତପେ ହେବେ ନିପୁଣ ।
ଶିରୀଷ କୁସୁମ କୋମଳ ପାଦ ପଙ୍କଜ ବେନି
କ୍ଷୋଣୀ ସଂକ୍ରମଣ ସହିବ ଉପାନହ ନ ଘେନି ।
ଅନନ ନଳିନ ଭ୍ରମର ସ୍ଥିତ ଅଳକା ମାଳା,
ବର୍ଣ୍ଣ ବହିବ କି ପିଙ୍ଗଳ- ଜଟା ରଜତ ଶ୍ରୀ ବାଳା ।

କୁସୁମ କୋମଳ ଶ୍ରୀଅଙ୍ଗ　　କ୍ଷୁଧାପିପାସା ଆଦ
ପରୀଷହ ବୃନ୍ଦ ସହିବ　　ତପ ପାରିବେ ସାଧି" ।
ଦଶନ ଅଂଶୁରେ ଭୂପତ　　ଦଶଦିଶ ଧବଳ ;
ହସେ କହିଲେ "ତାପସେ;　　ତପେ ଅଛି ସୁ ବଳ ।
ଶାନ୍ତ ଗର୍ବ ଶୂନ୍ୟ, କାମିନୀ –　　ପ୍ରାଏ ସଦାବ୍ରତ,
ଶୀତଉଷ୍ଣ ନାହିଁ ତପରେ　　ଧ୍ୟାନ ଯାଗ ହସନ୍ତୀ ।
ଅଙ୍ଗରାଗ ଗୁରୁ ଆଦେଶ,　　ବିଷ୍ଣୁ–ବଧୂ ସେବିବ,
ଯୋଗ ସରୋବରେ ଖେଳ ମୁଁ　　ଗ୍ରୀଷ୍ମ– ତାପ ତରିବ ।
ଗୀତି ପ୍ରାଏ ଘୋଷି ଆଗମ　　ଦେଖି ଭବ ନାଟକ,
ବାରବାର ଦନ କାଟିବ　　କାହିଁ ନପ ଅଟକ ।
ମୃଗୟା ବ୍ୟସନେ କଠିନ　　ଭ୍ରମି ଚିର କାନନେ,
ସେ ପାଦ କୁଣ୍ଠିତ ହେବକି　　ପୂତ ତୀର୍ଥ ଅଟନେ ।
ଦେବତା ଦରଶନେ ଯେମନ –　　ପ୍ରାଏ ଦେବେ ଅବଶ୍ୟ,
ତପଃସୀରେ କର୍ଷି କ୍ଷେତ୍ରମୁ　　ଲଭେ ମୁକତି ଶସ୍ୟ ।
ଦୁରନ୍ତ ଇନ୍ଦ୍ରିୟ ଅଶ୍ୱକୁ　　ବୁଦ୍ଧି ଶାନ୍ତି କଶାରେ,
ଉପନୀତ ନରେ ନବୃତି –　　ପୁରୀ ତୋରଣ ଦ୍ୱାରେ ।
ସ୍ଥୂଳଦର୍ଶୀ କାଇ ମାନବ –　　ପଡୁଛି ସ୍ୱପ୍ନ ଛଳରେ,
ଅଛି ମୁକତି ଶେଷ ଶରଣ୍ୟ　　ବିଷ୍ଣୁ ପଦ ତଳରେ" ।
ସୁରଧୁନୀ ନୀର ତରଙ୍ଗ　　ଶୁଣି ବାକ୍ୟ ରଚନା,
ତଥାସ୍ତୁ ଉଚ୍ଚାରି ତାପସେ　　କଲେ ସ୍ତବ ଭଣନା ।
"ଭବଧୂନୀ ଯବ ମଧ୍ୟରେ　　ପାପି ପକ୍ଷେ ଯଯମ,
ଅଳ୍ପବଳ ନୃପ ପକ୍ଷରେ　　ଯଥା ଦୁର୍ଗ ଦୁର୍ଗମ ।
ନାନାଦେବେ ଭ୍ରମି ଏକାର　　ଭକ୍ତ କର୍ମ ସ୍ୱାମିଙ୍କ,
କ୍ରୀତ ଦାସପରି ରହନ୍ତି　　ଫଳମୂଲ୍ୟ ପାଇଁକି ।

ପୂର୍ବ ଜନ୍ମ କର୍ମ ସଂସ୍କାର　　ହୁଏ ନର ମାନସ,
ପିଶାଚ ପରାଏ ପ୍ରକାଶ　　କରେ ନରକ ପ୍ରଭାବ
ହୀନ ସଙ୍ଗ ସରୁ ଦୁଃଖଦ　　ଶେଷେ ସଂସାର ସୁଖ
ଅମୃତ ସମାନ ମାନବ　　ଭୁଞ୍ଜେ ନୋହି ବିମୁଖ
ପଙ୍କିଳ ପଙ୍କରୁ ପଙ୍କଜ　　ପ୍ରାଏ ପାପ ସଂସାରୁ,
ଜନ୍ମ ହେବେ ଧନ୍ୟ ନୃପତି　　ପୂର୍ବ ପୁଣ୍ୟ ବଳରୁ ।
ମହୋଦଧି ପୁରେ ଯିବାକୁ　　)ଅଛି ଦୁଇ ପଦବୀ
କର୍ମ କିଂବା କର୍ମଫଳର　　ତ୍ୟାଗ ଶ୍ରେୟସ୍ର ରବି ।
ଶବ୍ଦାର୍ଥ ପରାଏ ସଂପୃକ୍ତ　　ସଦାକର୍ମ, ମାନସ,
କାର୍ଯ୍ୟଭେଦ ଗତ୍ ଜେବେହେଁ　　ନୁହେ ନରର ବଶ୍ୟ।
ଯୋଗେ ରୁଦ୍ଧଜସ୍ର ନୃପତେ　　ବଡ ଦୁର୍ଗମ ମାର୍ଗ,
ବିଷ୍ଣୁପଦେ କର୍ମ ସମର୍ପି　　ଫଳେ ଭକ୍ତ ବିସର୍ଗ" ।
ମଧୁମୟ ବାଣୀ ଶ୍ରବଣେ　　ରୋମାଞ୍ଚିତ ଶରୀର
ଉଦ୍ବେଳିତ ହର୍ଷ ସାଗରେ　　ବୁଡ଼ ଭକ୍ତ ପ୍ରବୀର,।
ଶିରୁ ରତ୍ନ ମୟ ମୁକୁଟ　　ସାରସନ ଶରୀରୁ,।
ତେଜିଲେ କୌଷେୟ ବସନ　　ଭବ ଅର୍ଣ୍ଣବ ଭୀରୁ
ଶିରେ ଜଟା ଜୁଟ କଟୀରେ　　ପୁଣି କଷା ବସନ
ଯେଣସ୍ୱଏ ଶାନ୍ତ ଦିଶିଲେ　　ଯଥା ସାନ୍ଧ୍ୟ ତପନ
ଶଶିଦ୍ୟୁତି ରୁଦ୍ର ଭଗୀସ　　ଅର୍ପି ପୀଠେ ଉପତ,
ପ୍ରଣମି ଚାଲିଲେ ଗମ୍ଭୀର　　ସନ୍ନ୍ୟସରୁ ଟ୍ଠେଭ ।
ବାଜିଲା ଅନନ୍ଦେ କଂସାଳ　　ବୀର କାହାଳ କମ୍ବୁ
ମହା ପୁରୁଷର ସଦୃଶ ଥିଲେ　　ସେକାଳେ ପ୍ରଭୁ ।
ଏକାଳେ ବଧିର ବଧାନ　　ଦେଖ ବିଚିତ୍ର ମୟ,
ଅସ୍ତ କରଣ୍ଟରୁ ଚନ୍ଦ୍ରମା　　ରବି କଲା ଉଦୟ

ବଧି ଉପାଲମ୍ଭେ ଥିବାଣେ କୋଟିକୋଟି ତାରକା,
ଲୁଚି ଲୀନ ହେଲେ ସାଗର- ମଧ୍ୟେ ଯଥା କରକା ।
ଚନ୍ଦ୍ରମା ହରଷେ ଯାମିନୀ ପ୍ରାତଃ ସନ୍ଧ୍ୟା ଅନଳେ,
ସ୍ୱତନୁ ଅହୁତି ଦେଇଁକି ମିଳିଗଲା ଚଞ୍ଚଳେ ।
ଯାମିନୀ ବିରାମ ସୂଚିଲା ପୂର୍ବଦିଗ ପ୍ରାଙ୍ଗଣ,
କଲେ ଅଗ୍ରଗାମୀ ସହଜା ପ୍ରାତଃସନ୍ଧ୍ୟା ବିଧାନ ।
ମହାହବେ ମତ୍ତ ମନେତ ଭସ୍ମ ସାତ୍ ସହିତା,
ପ୍ରାତଃସନ୍ଧ୍ୟା ଗଲେ ବହିଲେ ପ୍ରେଷି ବହ୍ନି ଦେବତା ।
ବିକ୍ଷେପିଲେ ବାଳ ଅରୁଣ କୋପେ ବହୁ ଶୋଣିମା,
ମଣେ ଚକ୍ରବାଳ ଚକ୍ରେକି ଛେଦେ ଭୂସ୍ପୃଷ୍ଟ ସୀମା ।
କ୍ରମେ କ୍ରମେ ବ୍ୟୋମ ପ୍ରାଙ୍ଗଣେ ହେଲା ରବି କ୍ରମଣ,
ସନ୍ଧ୍ୟା ସାରିରୂପ ବହିଲେ ଉପ ବନ ଭ୍ରମଣ ।
ଶାରୀ-ଶୁକ-ଶିଖି-ଅରବେ ଶାଖୀ ପୂରୁ ସ୍ୱାଗତ,
ଧୂତ ପୁଷ୍ପପତ୍ର ଫଳେକି କଲା ଅତିଥି ବୃତ୍ତି ।
ତାଳ ନାରିକେଳ ଖର୍ଜୂର ସିନ୍ଧୁ ବାତେ ଦୋହଲ,
ନୃପତି ମାନସ ହରିଲା ଶୃଙ୍ଗ ଶ୍ରମର ଭଲ ।
ବୁଲିବୁଲି ଉପ ବନରେ ପୁଣି ଶବର ପଲ୍ଲୀ,
ବ୍ୟାଳ ମାଳା କୁଳ ପାତାଳ- ଶ୍ରେଣୀ ବଣୀ ନଗରୀ-
ଯହିଁ କୃଷ୍ଣକାୟ ଶବରେ ବହୁ ଭୀଷଣ ଗଦା
କାଦମ୍ବରୀ ମଦେ ଉନ୍ମତ୍ତ ରକ୍ତ ନୟନ ସଦା,
ବିକଟ ନଳିନ ନୟନା ଉରେ ଗୁଞ୍ଜା ଭୂଷଣା
ମଞ୍ଜୁର ମଞ୍ଜୀର ଚରଣା ଦର ହାସ ବଦନା,
ମରକତ କାନ୍ତି କେୟୂର- ପୁଞ୍ଜ ମେଖଳା କଟୀ,
ପ୍ରବାଳ କଣ୍ଟିକା ଶୋଭିନୀ ,, ଗୁଞ୍ଜା ରଞ୍ଜିତ କଣ୍ଠୀ,

ମୁକୁ କୁନ୍ଦ ପୁଷ୍ପ କଣ୍ଠେ    କୁନ୍ଦ ପୁଷ୍ପ ରଦନା,
ତ୍ରସ୍ତ ଚନ୍ଦ୍ର ବିମ୍ବ ବଦନା    ଯହିଁ ଭିଲ୍ଲ ଅଙ୍ଗନା,
ବାରୁଣୀ ମଦସ୍ୱ ସେବନେ    ରକ୍ତ ଘୂର୍ଣ୍ଣିତ ନେତ୍ରେ,
ଶୃଙ୍ଗ ନୃତ୍ୟେ ରତା ଦେଖିଲେ    ଏକଠାରୁ ଏକ୍ଷେତ୍ରେ ।
କିଶ୍ଵା ବସୁ ପଙ୍କ ପଙ୍କଜ-    ପଦ ଶବର ପଦ୍ମ,
ଯାହାର ଚରଣେ ପଡ଼ିଲ    ଚିହ୍ନି ନୃପଙ୍କ ଦୂରୁ ।
କହିଲ "ହେନୃପ ସନ୍ନିହ    ହେଲ ଶବର ପଲ୍ଲୀ
ବିଷଲତା ମଣେ ପାଲଟି    ଗଲ ତାମ୍ବୁଲ ବଲ୍ଲୀ" ।
ସହସା ଭଣିଲେ ନୃପତି    "ଯହିଁ ପୀଯୂଷ ବାକ୍ୟ,
ପବିତ୍ର ସେକ୍ଷେତ୍ରେ ଶବର-    ଗ୍ରାମ ମୋ ମତେ ନାହିଁ" ।
"ସତ୍ୟ ହେଲେ ନୃପ ! ବାକ୍ୟ    ହିଏ ନୀଳ କନ୍ଦରେ ।
ଶ୍ରୀହରି ସେବାରୁ ବଞ୍ଚିତ    ହେଲେ ଭିଲ୍ଲେ କନ୍ଦରେ ।
ବୋଇଲେ ନୃପତି "ଶବର    କେଉଁ ଜାତି ଦେବତ
ଅର୍ଘ୍ୟ ଦେବେ ଜାତି ଭୂମିର    କେଉଁ ମତେ ମମତା" ।
ଭଣିଲ "ହେନୃପ ସେମନ୍ତେ    ଏଣୁ ପୁଞ୍ଜେ ସଂସାର
ଭଣିତ, ସେମନ୍ତେ କରିଛି    ପାରେ ମାନବତ୍ୱର ।
ଅଶ୍ୱ ଅଶ୍ୱାଭାସ ସଦୃଶ    ବିନା ଅର୍ଘ୍ୟ ଅନାର୍ଯ୍ୟ,
କିନ୍ତୁ ସେ ମାନବ ସାଧର୍ମ୍ୟ    ସାଥେ ସଂଯୋଗ ବାର୍ଦ୍ଧ୍ୟ" ।
ପଲ୍ଲୀପତି ବିଶ୍ୱାବସୁର    ବାକ୍ୟେ ତୋଷି ନୃପତି,
ଲଙ୍ଘିଲ ଅନାର୍ଯ୍ୟ ପ୍ରଦେଶେ    ପନ୍ଥ ଦର୍ଶିତ ପନ୍ଥ ।
ବାହୁପଟ୍ଟ ଶାଠୀ ତାଳିରେ    କାର ଭଣଲେ ବାଣୀ'
"ନୀଳାଚଳଲଗି ହେ ଭିଲ୍ଲ    ଅଛ ହେଲ ସେନାଣି ।
କନ୍ଧ ପୁଲିନ୍ଦାଦି ଦସ୍ୟୁତ    କଣି ବାହୁ ବଳରେ,
ଶିଖର ସମାନ ଦେଉଳ    ଭୋଳା ନୀଳା ଚଳରେ ।

ତଳ ତବ ପୃଷ୍ଠେ ମାଳବ- ସେନା ହେ ରଣ ସିଂହ
ଘୋଷୁ ଚିରକାଳ ସୁଯଶ ତବ ଏଡି କଳଙ୍କ ।

## ଦ୍ୱିତୀୟ ସର୍ଗ ।
### ( ରାଗ ବଙ୍ଗଳଶ୍ରୀ )

ଏଅନ୍ତେ ଭାସ୍କର ବଢ଼ାଇଲେ କର
ଆକାଶ କେନ୍ଦ୍ରରେ ବସି,
ସାଗର ଚରଣ ଢେଙ୍କ ଜଳ ଚର
ଗଲେ ଗଭୀରକୁ ପଶି ।
ବରଭ୍ୟେ ପୁଣି ସ୍ଥଳଚର ଜୀବେ
ସେବୁ ଗ୍ରାମ୍ୟାଦେବୀ ପାଦ,
ତପ୍ତ ପବନରେ ନଭାସି ବିହଙ୍ଗେ
ତରୁବୃନ୍ଦେ କଲେ ନାଦ ।
ଏକାଳେ ଶବରେ ଧନୁର୍ବାଣ ଘେନି
ସମ୍ମାନେ ମାଳବ ପତି,
ବଢେ କରାଇଲେ ଅନୁଗତ ହୋଇ
ଯହିଁ ଥିଲେ ସେନା ପତି ।
ଦେଶେ ଅଶ୍ୱବାର ପ୍ରେଷି ନରବର
ନଜ ନାଗରିକେ ଆଣି,
ନବନଗରରେ ମଣ୍ଡିଲେ ଶ୍ରୀକ୍ଷେତ୍ର
ମାଳବ କମଳା ସ୍ୱାମୀ ।
କଳିଙ୍ଗ କୂଳରୁ ଶବର ଦ୍ୱୀପକୁ
ସାଗର ଶୟ୍ୟାରେ ସେତୁ,
ମରକତ ମନ୍ତୁ ପରାଏ ରାଜିଲା
ଶ୍ୟାମ କଂଛ ସାରୀ ହେତୁ ।

ସ୍ୱଚ୍ଛ ସମତଳ — ସାଗର ସଦୃଶ —
ଦର୍ପଣେ ନଗର ଛବି,
ଦର୍ଶେ ଯଥାଭୂତ — ବଳେ ଭୁଲାଉଛି,
ଇନ୍ଦ୍ରପୁର ପରାଭବି ।
ପ୍ରାକୃତ ସୁଷମା — ପରେ ବନସ୍ପତି
ଉପବନେ ପରୁ ଶମି,
ଶାନ୍ତ ସୁଖ ଯହିଁ — ଉପଭୋଗ କଲେ
ତପୋବନ ବଭୂ ଯମୀ ।
ଉପରେ ପ୍ରାକାର — ଅଭ୍ରଂକଷ ଶିରେ
କୋଟି କପି ଶିର୍ଷ ବନ୍ଧ,
ଦିଶିଲା ଯେସନେ — ଶତ ଶୀର୍ଷ ଫଣା
ଟେକି ଉଠେ ଶେଷ ଅହି ।
ସ୍ତର ଦଶେ ସ୍ତର — ଗୋପୁର ଉପରେ
ପଥ ପାର୍ଶ୍ୱେ ହର୍ମ୍ମ୍ୟାବଳୀ,
ଶୋଭିଲା ଯେସନ — ନଗର ରମାର
କଣ୍ଠ ଭୂଷା ରତ୍ନ ମାଳୀ ।
ଅଗୁରୁ କୁଙ୍କୁମ — ଚନ୍ଦନ କସ୍ତୁରୀ
ଗନ୍ଧ ଧୂଳୀ, ବାସେ ଯହିଁ,
ବିଚିତ୍ର ବସନ — ମଣି ଭୂଷଣରେ
ଗୃହଗର୍ଭ ଝଟକଇ ।
ନାନା ଚିତ୍ର କାନ୍ତ — ଛଟାରେ ଘଡ଼ିତେ
ରଙ୍ଗମା ଯେ ଶୁଭ ସଜି,
ବିମାନ ଆକାରେ — ବଟ ଚଉପାଶେ
ବନ୍ଧେ ରାଜପଥ ସାଜି ।

କୋଟି କୋଟି ସୌଧ — ସଦନ ମଧ୍ୟରେ
ଉଚ୍ଚେ ଉଭା ରାଜ ବାଟୀ,
ସ୍ୱର୍ଣ୍ଣ ପତାକାରେ— ସ୍ୱର୍ଣ୍ଣ କଳଶରେ
ମନ ନେତ୍ର ନଏ ଘୋଟି ।
ସ୍ଫଟିକ ପ୍ରାଙ୍ଗଣେ ଶଣି ବମ୍ବ ଦେଖି
ଗୋଳକଲେ ଯହିଁ ରାଣୀ,
ରାଜ କୁମାରଙ୍କୁ ଅଶ୍ୱାସନ୍ତ କେଳୀ-
କଲହଂସ ଭ୍ରମ୍ବ ଅଣି । '
ସୁମିଜ ନମୂନା କୃତ୍ରିମ ପୁତ୍ତଳିକା-
ବଳୀ ବବ୍ରଜନ୍ତ ଭଙ୍ଗି,
ମନେହୁଏ ଦେବ ଦଳ୍ପି ଅବି ମର୍ତ୍ତ୍ୟେ
ନଗର ଦେଖନ୍ତ ରହିଁ ।
ନାଗରିକ ନର— ନାରୀ ରୂପ ଗୁଣ
ଗୁଣି ଭଣେ ନମ୍ର ବାକ୍ୟ,
ସଂଗୀତ ମନ୍ତ୍ର— — କାଇ ଦେବଲୋକରେ
ଖସିଅଛୁ ବ୍ୟୋମୁ ନାକ ।
ଲାଙ୍ଗୁଲ ଗୁଜ୍ୟର ଅନାର୍ଯ୍ୟ ନୃପତ
ରତ୍ନ ରାଜପଙ୍ଗେ, ସନ୍ଧି,
ବାନ୍ଧିକଲେ ଦୁର୍ଗ— ଚତୁଃପାଶ କନ୍ଦ
ଗୁହି ଅର୍ଯ୍ୟ ଅଭିସନ୍ଧି ।
ଖାଡବାଷ୍ଟ ସେତୁ ଯୋଡଦେଲ "ବପୁ"
ଗୁପ୍ତେରଦ୍ଧ ସେନା ବାସେ,
ମାଳବ କୌଶଳ ନବୁଝି ଅନାର୍ଯ୍ୟେ
ପଡଗଲେ କାଶ୍ର ବାପେ ।

ଅନାର୍ଯ୍ୟ ମସ୍ତକୁ ମୁକୁଟ ମଣ୍ଡଳ
ମଣ୍ଡିଲା ଆର୍ଯ୍ୟଙ୍କ ମୁଣ୍ଡ,
କ୍ରମେ କ୍ରମେ ଓଡ୍ର — ଦେଶେ ଅଧି ହେଲେ
ସାମନ୍ତ ନୃପତି ବୃନ୍ଦ ।
ପୂର୍ବଠାରୁ ପୁର — ଗୌରବ ବଢ଼ିଲା
ବର୍ଣ୍ଣିବାକୁ ନାହିଁ ବାଣୀ,
କେବଳ ପାଠକେ ଉପହାର ଦେଲୁ
ସ୍ୱଚ୍ଛସଭା ଶୋଭା ଠାଣି ।
ବୀଣା ବାଇଁ କାହିଁ ଗାୟକେ ଗାଆନ୍ତି
ସପ୍ତସ୍ୱର ଅନୁସରି,
ଶୃଙ୍ଗ ତାନମାନ ନର୍ତ୍ତକେ ନାଚନ୍ତି
ଚିତ୍ତବୃତ୍ତି ଅପହରି ।
ରତ୍ନମୟ ଭିତ୍ତି — ଭବନେ ମାନବେ
ସ୍ଥାନାନ୍ତରୁ ଅନ୍ତସ୍ଥଳେ,
ବସିଲେ ନର୍ତ୍ତନେ — ଦର୍ଶନ ଲାଳସେ
ପ୍ରତି ବନ୍ଧୁଁ ଭରିଥିଲେ ।
ମର୍ଦ୍ଦଳ ନିନାଦ ଉଚ୍ଚ ଗୃହ ଭେଦ-
ନପାରି ଆସଇ ଫେରି,
ଶୁଣନ୍ତି ସଦସ୍ୟେ ଅଷଜ ନିସ୍ୱନ
ମନେମଣି କର୍ଣ୍ଣ ଡେରୁ ।
ପ୍ରଦୀପର ପ୍ରଭା ରତ୍ନେ ପ୍ରତିଫଳି
ଘଡ଼ଇଙ୍କ ଦୀପ ସ୍ତମ୍ଭା,
ପ୍ରକାଶୁଛି ଲୋକେ ଏସଭା ସଦନେ
ଛୁପେ ନାହିଁ ପାପ, ମାୟା, ।

ବୀଣାବେଣୁ ସ୍ୱରେ ମଞ୍ଜୁଳ ବଚନା
ପଞ୍ଜରର ଶୁକସାରୀ,
ମିଳାଇ ସ୍ୱସ୍ୱର କାହିଁ ଧରିଥାନ୍ତ
ସ୍ତୁତି ପାଠକର ପାଳି ।
ସଭା ସଦନର ପ୍ରାଙ୍ଗଣରେ ସଦା
ଶୃଙ୍ଗାରିତ ମତ୍ତଗଜ,
ସୁବର୍ଣ୍ଣ ଶୃଙ୍ଖଳ- ଚରଣ ଚତୁର
ସ୍ୱଚ୍ଛେ କାହିଁ ବାଜିବ୍ରଜ ।
ସିଂହ, ବ୍ୟାଘ୍ର, କାହିଁ ବିଶାଳ ପଞ୍ଜରେ
ପଡ଼ି ଭାବୁଥାନ୍ତ ମନେ ।
ସ୍ୱାଧୀନତା ଧନ ମିଳିଗଲେ କ୍ଷଣେ
ବନ୍ଧନ ଦେଖାନ୍ତେ ଜନେ ।
ତାମ୍ବୁଳ ପାନୀୟ ବାଳ ବ୍ୟଞ୍ଜନାଦି
ଘେନି ଉଭା ଭୃତ୍ୟଗଣ,
ମଣିପୁଷ୍ପ ଉପ- ହାରେ ସେବି ପାଦ
ନମନ୍ତ ସାମନ୍ତ ପଙ୍କ୍ତି ।
ଶ୍ରେଣୀବାନ୍ଧି ସେନା ସଭା ଅଗ୍ରେ ଉଭା
ସଦାଥାନ୍ତ ବୀରବେଶେ,
ଧ୍ୱଜଛଟା ଦେଖି ମନେ ହୁଏ କିବା
ମୂର୍ତ୍ତିମନ୍ତ ବୀରରସେ ।
କାହିଁ ଗୁରୁ ବୁଧ- ସମ ସଭାସଦ
ନୀଳାସନାକାଣେ ବସି
ଶୋଭୁଥାନ୍ତ ସଭା - ପଢପଦେ ବରୁ
ମାଳବ ଧରଣୀ ଶଣୀ ।

ମଣି ମୁକ୍ତାଯୁକ୍ତ　　　　କାଞ୍ଚନ ରଚିତ
　　ଚମ୍ପକ ଫାଞ୍ଚାଳୀପରି,
ଶୋଭ ବସିଛନ୍ତି　　　　ଯହିଁ ବଦନ
　　ଅମର ଅନୁଭବିଶ୍ରୀ ।
ଏକାଳେ ଅସିଲେ　　　　ଗଣକ ଶଙ୍କର
　　ଲୁଣ୍ଠିବେ ଛାକ୍ଷପଞ୍ଜିକା,
କହିବାକୁ ନୃପ　　　　ସ୍ୱନକ୍ଷେ ଦେଖିଲେ
　　ସ୍ୱପ୍ନାଙ୍ଗ ଶୁଭଲକ୍ଷଣିକା ।
ସୌନ୍ଦର୍ଯ୍ୟକ ଦେଖି　　　　ଇନ୍ଦ୍ରଦ୍ୟୁମ୍ନ ମନେ
　　ମଣ୍ଡଳ କୃଷ୍ଣ ମନ୍ଦର,
ଲୁହି ଶୁଭ ଲଗ୍ନ　　　　ଶୁଭବେଳେ ଛନ୍ଦେ
　　ଶାଳବମସ୍ତ ମିହିର ।
ନୃପାଦେଶେ ଚଉ—　　　　ବସ୍ତୁ ଅବିଶୀଘ୍ରେ
　　ଲଗିଲେ ଶିଳ୍ପିକରକର,
ନୀଳାଚଳ ଶୃଙ୍ଗ　　　　ଯାଇଁ ରଚିଲେ
　　ଲୁକ୍ଷମ ଗିରି ଶିଖର ।
ବେଢ଼ାଇଲେ ଶିଳ୍ପୀ　　　　ବାହାର ବେଢ଼ାକୁ
　　ଅମ୍ବରଲମ୍ବି ପ୍ରାକାରେ,
ଚଉଦିଗେ ଯାର　　　　କଣୋଭେ ଚଉଦ୍ୱାର
　　ବିଶାଳ କନକ କାରେ ।
ଦ୍ୱାର ବେଳପାଖେ　　　　ବସାଇଲେ ସିଂହ
　　ପୂଜିର ଲୁଦିମ ଘଟା ।
ଦ୍ୱାରେ ଯେବେଳ　　　　ସମ୍ମୁଖଦ୍ୱାରେ ଥିବା-
　　ପ୍ରକୁପିତ ସିଂହେସଟା ।

ପ୍ରସ୍ତର ପର୍ବତ-　　　　ପ୍ରତୀମ-ଗୋପୁର-
ପରେ ସୋପାନର ଶ୍ରେଣୀ,
ଅସିତ ଅମ୍ବରେ　　　　ଝଡ଼ିଲ ଯେସନ
ଯମୁନା ଲହରୀ ବେଣୀ ।
ପାବଚ୍ଛର ପରେ　　　　ଦ୍ୱିତୀୟ ପ୍ରାକାର
ବହୁଦେବ କୁଳେ ମିଶି,
ଦ୍ୱିତୀୟ ବେଢ଼ାକୁ　　　　ଅବରଣ ଉଚ୍ଚ
ଘାଟୀପର କାନ୍ଥ ଦିଶି ।
ବଡ଼ ଦେଉଳର　　　　ଚଉଦ୍ୱାରେ ଏକି
ଲଘୁଦେବ ଗୃହଗଣ,
ଘନ ଶ୍ରୋପଲ ପ୍ରାଏ　　　　ରହିଲେ ଆବୋର
ମୁଗୁନିମୟ ପ୍ରାଙ୍ଗଣ ।
ବିଶାଳ ଚତ୍ୱର—　　　　ମଧ୍ୟେ ବାମ୍ପାର୍ଶ୍ୱେ
ଜଗତେ ବୃଷିମକୁଣ୍ଡ,
ପଡ଼ିଅଛି ଯହିଁ　　　　ସ୍ମରିବାକୁ ସର୍ବେ
ପାଷାଣମୟ ଭୁଷଣ୍ଡ ।
କଳ୍ପବଟ ତଳେ　　　　ବନ୍ଦୁକର ଲାଗି
ନିର୍ମିତ ବେଦୀ ମଣ୍ଡପ,
ସ୍ତମ୍ଭାବଳୀ ତଳେ　　　　ଜମ୍ମା ସ୍ୱଚ୍ଛ ଜଳେ
ଗିଲି କଲେ ଭବାତପ ।
ସ୍ୱଚ୍ଛ ଉପଳରେ　　　　ଘଟିତ ପାବଚ୍ଛ
ମୂଳମନ୍ଦିରର ଦ୍ୱାରେ ,
ଶୋଭେ ଯଥା ମେରୁଁ　　　　ମନ୍ଦାକ ଝରତ
ଗଡ଼ୁଛି ପ୍ରବାହାକାରେ ॥

ସୁବର୍ଣ୍ଣ ମାଣିକ୍ୟ  ଖଚାଣ ତୋରଣେ
ମଣ୍ଡିଲେ ଦ୍ୱାରଦେହଳୀ ।
ଭାଗ୍ୟହୀନ ହେତୁଁ  ସୁନାପୀର ଥକୁ
ଗରବକୁ ଦେଇ ଦଳ ।
ଅଖଣ୍ଡ କିରଣ–  ପ୍ରଚଣ୍ଡ ଭାସ୍କର
କମଳ ମଣ୍ଡଳ ଭାଳ,
ଭୋଗ ମଣ୍ଡପର  ଝଟକ ଦର ଛିଲେ
ନାଟ୍ୟାଗାର ମୁଗଶାଳୀ ।
କ୍ରମେକ୍ରମେ ଚୂଡା  ନେତ୍ରଚ୍ଛଟା ହେଲେ
ଭୂଇମନ୍ଦରର କୋଳେ,
ଏଶୋଭା ଦେଖିଲେ  ନାଚେ ସବୁକର
ସପ୍ତ କ୍ଷୋଣିଶେଳ ତୋଳେ ।
ଅଭ ଅତମ୍ବରେ  ବଡ ଦେଉଳଙ୍କ
ଶିଖର ଚେକ୍କ ଅମ୍ବରେ
କ୍ଷୁଦ୍ରଦେବ କୁଳ  ଶାସନ ପାଇକ
ସକ୍ଷପକ୍ଷ ଶୋଭା ବରେ ।
ନୀଲମଣି ମୟ–  ନୀଳଚକ୍ର ଶିରେ
ଖଞ୍ଜିଲେ ସ୍ୱର୍ଣ୍ଣକଲଶ,
ସ୍ୱର୍ଣ୍ଣମୟ ଚକ୍ର–  ଦଣ୍ଡେ ଯା ଅନ୍ତର
ନାରନ୍ତ୍ର ଦେହଲବଶ୍ୟ ।
ଜୟ ବୈଜୟନ୍ତୀ  ଅର୍ଘ୍ୟ ଧଜୟର
ଯେହ୍ନ ଜୟସ୍ତମ୍ଭେ ଢାଳେ ।
ଅମ୍ବର ଅମ୍ବୁଧି–  ବଧୂ ଭୋଯ୍ୟପାଇଁ
ଯଥା କ୍ଷେତ୍ର ବିହାରିଲେ ।

ବନ୍ଧୁର ସ୍ଫଟିକ-        ମରକତ ମଣି-
ମଣ୍ଡିଏ ବଡଦାଣ୍ଡେ ଉନ,
ସ୍ୱଚ୍ଛେ ଯଥା ନୀରେ        ବସିଛି ତାରକା-
ଯମୁନା-ପାଳଶ୍ରୀକୂଳ ।
ପ୍ରସ୍ତରେ ପ୍ରସ୍ତରେ        ପ୍ରାସାଦର ସାଙ୍ଗେ
ଖୋଦିଲେ ଯେ ଚାରୁଗୃହ,
ସେଥିର ଭିତରୁ,        ଏକାନ୍ତ କାନନେ
ଅଟୁଟ ଦେଉଳସାଙ୍ଗ ।
ମର୍ତ୍ତ୍ୟେ ମୋକ୍ଷଧାମ        କଳ୍ପିଲେ ଶିଳ୍ପୀଏ
ଅପୂର୍ବ ଶିଳ୍ପ କୌଶଳେ,
ଯେଉଁଲା ବଳରେ-        ବହିଲା ଏଥର
ଉତ୍କଳ ନାମ ଭୂତଳେ ।
ନୀଳାଦ୍ରି ଗର୍ଭର        ସୁଦୃଢ ଗରଭେ
ରତ୍ନମୟ ସିଂହାସନ,
ଗଢ଼ିଲେ ଯେସନ        ସୂକ୍ଷ୍ମ ଶୈଳ ସ୍ଥିତା
ଶିଳୀଦେବୀ ବ୍ୟୋମେଘନ ।
ନୀଳାଦ୍ରି ଗହନ-        ତର୍ ପଦ୍ମାନନ
ଜଗନ୍ନାଥଙ୍କ ମୁଖ,
ଦେଖିବାକୁ ଏକା        ମାଳବ ମଣକା-
ମାନସେ ରହଲା ଦୁଃଖ ।
ପୁଣି ହଜାଇଲେ ।        ମାଳବୁଁ ମହିବେ
ଶୋଭମଣ ମଣ୍ଡପ ସ୍ତୂର ।
ଯାହାଙ୍କ ହଣାଳ- ।        ଗଲେ ଲଲାଟିକା,
ଚନ୍ଦ୍ରସୁତା ସ୍ତୋତପର ।

ଯଜ୍ଞଭସ୍ମ ସଙ୍ଗେ　　　ଯଜ୍ଞସୂତ୍ର ଶୋଭେ
　　ବେଦର ଅଗାଧବକ୍ଷେ,
ଗଜଲେ ସେବପୁ　　　ବ୍ରାହ୍ମଣେ ଧର୍ମର
　　ଯଜ୍ଞ ଭବନର କକ୍ଷେ ।
ଅଧ୍ୱର୍ଯ୍ୟୁ ଉଦ୍‌ଗାତୃ-　　　ହୋତୃଗଣ ମିଳି
　　ଡାକିଲେ ଯେଧନ୍ୱାହୁଙ୍କ ।
ଧୂଧୂମ୍ବରେ ଜଳ　　　ଗୁଡଗଲା ବ୍ୟୋମେ
　　ଲେଉଡବାକୁ ବ୍ରହ୍ମମୂର୍ତ୍ତି ।
ନରେନ୍ଦ୍ରର ମଗ-　　　କୁଣ୍ଡ ମୁଣ୍ଡ ଉଠେ
　　ପ୍ରସ୍ରବଣ ସମ ଶିଖା
ମାଳବ ଗ୍ରଜର୍ଷି　　　ନଗଣିରେ ବସି
　　ଦଲେ ବ୍ରହ୍ମମୂର୍ତ୍ତିରକ୍ଷା ।
ଏହୁପର ବହୁ-　　　-ସମୃଦ୍ଧର ଅନ୍ତେ
　　ଅଶ୍ୱମେଧ ଶେଷଲାଗି,
ଲାଳାସ୍ୱିତ ଚକ୍ଷୁ　　　ଟେକିଲେ ଓର୍ବିଙ୍କେ
　　ପୂର୍ଣ୍ଣାହୁତ ଅଶ୍ୱ ମାଗି ।
ମହର୍ଷୀଙ୍କି ଗ୍ରହ୍ଣ　　　କହିଲେ ନରେନ୍ଦ୍ର
　　"ଯୀଉଦ୍ଧବନା ଅଶ୍ୱରକ୍ଷା,
କରିବାକୁ ଉବେ　　　କେହନାହାଁ ଦକ୍ଷ
　　ଇନ୍ଦ୍ରସଙ୍ଗେ ଯହିଁକକ୍ଷା" ।
ଶ୍ରୋଷ ପାଶମଧ୍ୟେ　　　ପ୍ରବେଶିବା ମାତ୍ରେ
　　ଛତ୍ର ଗୁଲୁପଶ ସଙ୍ଗ
ପ୍ରିୟବାଣୀ ଛୋଲ　　　ଭାଷିଲେ ମହର୍ଷୀ
　　ନେବେ ଅଶ୍ୱ ଜଳଭର୍ଗେ ।

"ବନ୍ଧୁକାଳ ଯେହ୍ନ        ମହାକାଳ, କାଳୀ,
ଅବନ୍ତୀରେ ପୂଜ୍ୟରହି,
ପାଇଥିଲ ତପେ        ଚୂରିବାକୁ ବକ୍ତ୍ରେ
ଦେଖି କହେ ଗଜସ୍ୱପ୍ନ ।
ସ୍ୱପ୍ନପଙ୍କେ ବରେ        ପଶି ହନେ ମୋର
ସୁରହସ୍ତୀ ଐରାବତ,
ଶ୍ୱେତର ସିନ୍ଦୁରେ        ମଣ୍ଡିଶିର, ଗିରି-
ଅଧିତ୍ୟକା ଧାଉଁବତ ।
ମଦୋ ହୃଷ୍ଟହୋଇ        ଉଠେ ଶୁଣ୍ଡା ଟେକ
ଦେଇଥିଲା ଯେଉଁରଡ଼ି,
ଘଡଘଡି ମଣି        ପଡୁଥିଲ ମୁହିଁ
ଉଚ୍ଚପର୍ଯ୍ୟଙ୍କରୁ ଗଡ଼ି ।
ସେକାଲରେ କାନ୍ତ        ଧରି ଅଙ୍କେ ମତେ
ଆଶ୍ୱାସି କହିଲେ କାନ୍ତେ ,
ଅନେକପ , ସୁତ        ଅନେକପ ସ୍ୱପ୍ନୁଁ
ସାର୍ଥକ ତବ ନଶାନ୍ତେ, ।
ଈଦେବଙ୍କର ଭାବ        ଦେବେ ସେ ଜାଣନ୍ତି
ମାନବେ ବୁଝିବେ କାହିଁ ,
ସ୍ୱପ୍ନ ଏବେ ଫଳେ        ପରିଣତ ହେଲା
ବିଲମ୍ବତ ନାହିଁ ଆଉ, ।
ଗର୍ଭେ ଧରି ଭ୍ରୂଣ        ବାଞ୍ଛୁଥିଲ ଯେବେ
ଶ୍ୱେତଛତ୍ର ଚନ୍ଦ୍ରବର୍ମ,
ଭଣୁଥିଲେ ନାଥ        ଏକଛତ୍ର ହେବ
ଗର୍ଭଜାତ ମୋରତନୂ ।

ସୁବାସ ବସନ୍ତ - କାମନା ମୋଦେଖି
ବୋଲୁଥିଲେ ତୋରପୁଷ୍ପ,
ଯଶଃସୌର ଭରେ ଦଶଦିଶ ଭରୁ
ଧରଣୀ କଳବପୂତ୍ର ।
ଦୋହଦ ଉଦୟେ ଅତିକୃଶ ତନୁ
ଦୋହଦ ପୂର୍ତ୍ତିବିଧାନେ,
ପୋଷିଥିଲେ ଭୂପ ବିକସିତ ବନ
ମଧୁର ମଧୂସ୍ନାନେ ।
ସ୍ୱପାଦେଶେ କାନ୍ତ ଭଣିଥିଲ ସବୁ
ଅଭିଳାଷ ତବକର୍ଣ୍ଣେ,
ବିଦୋଷେ ବିଧାତା ନନ୍ଦନର ଭାଲ
ଲିଖିଲା କଦର୍ଥ ବର୍ଣ୍ଣେ ।
କୁମାର ଜନମ- କାଳେ ଦିଗଙ୍ଗନା
ଧରିଥିଲେ ପ୍ରସନ୍ନତା,
ଜାତକ ବାଚକ- ବାସ ପାଠ ଛର
ପବନ ଅନୁକୂଳତା ।
ଜନ୍ମୋତ୍ସବେ ପୁଣି ଇଚ୍ଛା-ଧିକଧନ
ପାଇଥିଲେ ଅର୍ଥିକୁଳ ।
ବିଦୋଷେ ବିଧାତା ନନ୍ଦନର ଭାଗ୍ୟ
ହେଲା ଏତେ ପ୍ରତିକୂଳ ।
ଶ୍ରାବଣେ ପୟୋଦ ନୀପବୃକ୍ଷ ସର
ମନୋରଥ ମୋରମନେ,
ପଲ୍ଲବିତ କରି ଖେଳୁଥିଲା କାଳି
ଶୁଷ୍କୀଭୂତ ଯଥା ବନେ ।

ଘନରୁ ଘନକୁ　　　　　ରଙ୍ଗ ବିମ୍ବ ବିମ୍ବା
ବନରୁ ବନ ଶାବକ –
ପ୍ରାଏ କୋଳୁ କୋଳ　　　　　ଶୋଭୁଥିଲ ଯେତୁ
ସେଥିକ ସେନା ନାୟକ ।
ସ୍ୱର୍ଣ୍ଣାଦ୍ରି ଶିଖର–　　　　　ଚନ୍ଦ୍ରିକା ପରାଏ
ବିକଚ ଚମ୍ପକ ଅଙ୍ଗ,
ଚନ୍ଦ୍ର ଚନ୍ଦନକୁ　　　　　ମଣୁଥିଲ ଯେତୁ
ସେଅଜ ଧୂଳୀରେ ରଙ୍ଗ ।
ଶୁକ ଶାବକର　　　　　ପରାଏ ଯେଶିଶୁ
କାଳୁ କହୁଥିଲ ବାଣୀ,
ଥର ଥାଣୀ କର　　　　　ଗୃଳୁ ଥିଲ ପୁଣି
ସେଅଜ ହେବ ସେନାନୀ ।
ରାଜକୁଳେ ଜନ୍ମି　　　　　ରାଜକନ୍ୟା ଥିଲ
ରାଜପତ୍ନୀ ଅଜ ଏବେ ।
ତଥାପି ଯାତନା　　　　　ଗଲ ନାହିଁ ମନୁ
ଭବେ ସୁଖ ନାହିଁ ତେବେ ।
ଥରୁ ଝଙ୍କାର　　　　　ପଡ଼ିଲେ ଯେ ତଡ଼ି
ବୋଲାଇଲେ ଥରଦେବେ,
ଅଲୋକ କାଢ଼ିବା –　　　　　ଲଗି ହୁଅଇଲେ
ମଗବୃନ୍ଦ ଦେଖ ଏବେ ।
ଉପାଧି ଦୀଅନ୍ତି　　　　　ଲୋକେ କେତେରୂପେ
ରାଜସୂର୍ଯ୍ୟ ଶତମଖେ,
ପତଙ୍ଗ ପରାଏ　　　　　ଯୋଡିଲେ ସ୍ୱପକ୍ଷ
ରଚି ଶତଶତ ସଖ୍ୟେ ।

ସାମ୍ରାଜ୍ୟ ନଥାଇ ସମ୍ରାଟ, ନରେନ୍ଦ୍ର,
ହିଲେକ ନଥାଇ ଇନ୍ଦ୍ର,
ମଝେ ହେଲେ ବୀର! ସୁଖେ ବୋଲ ଇବେ
ମୁର୍ଚ୍ଛିତ ଧୀର କ୍ଷାନ୍ତ" ।
କ୍ଷାତ୍ରଚିତ ବାଣୀ ଶୁଣି ସ୍ୱଣୀଙ୍କର
ବୋଇଲେ"ଗୋ ଧୀରମାତା,
ତବମୁଖୁଁ ଅଜ୍ଞ ଶୁଣାଗଲା ଦେବ
କ୍ଲୀବ ଜନନୀର ଗାଥା ।
ଦେଖିଥିଲ ଦେବ ଦୁର୍ଗୋଦୟୁ ଦେଖି
କଳିଙ୍ଗ ଅଧମ ବାସୀ,
ମାନବ ପ୍ରାଚୀର କରତଳେ ମୋର
ଗଡ଼ ଚତୁଃପାର୍ଶ୍ୱେ ଅସି ।
ହସ୍ତାବସ୍ଥୁ ବଳେ ସାଗରେ ଭସିଲେ
ଗଲେକ ଗୋ ଦେବାଙ୍ଗେର,
ସେଏବେ ଶ୍ରୀଧୀର - କୁମାରକୁ ଘେନ
ବଞ୍ଚାଇବ ଜମ୍ବୁଶ୍ରେଣୀ ।
ଯାର ଅସିଲତା ଯମଜିହ୍ୱା ପରି
ଶୋଷଇ ଅରାତି ରକ୍ତ ,
ସେଏବେ ଶ୍ରୀଧୀର- କୁମାର ଶରୀର-
ରକ୍ଷାପାଇଁ ସଦାରତ ।
ବନାଗ୍ନି ସଦୃଶ - ପ୍ରତାପେ ଯାହାର
ପ୍ରତିପକ୍ଷେ ପଶି ବନେ,
ମର୍ମ୍ମରି ଶବଦ ଶୁଣି ବାମା ସମ
ଲୁଚନ୍ତି କମଳାରଣ୍ୟେ ।

ସେହ୍ୱେବେ ଦେବି !                    କୁମାରଙ୍କୁ ସେବ
        ଅଣିବ ଅଶ୍ୱକୌଶଳେ,
ଛଣିଛନ୍ତି କେତେ -                    ବାର ଦେବତାଙ୍କୁ
        ଦଇତେ ମାୟାରବଳେ ।
ଜଗତେ ଯେ ଖଣ୍ଡ — ମହାଚଳେ ମନ୍ଥେ
        ମଦାହବ କ୍ଷୀରାର୍ଣ୍ଣବ ।
ସେହ୍ୱ ସିନା ଭବେ                    ଦେଖ ପଦ୍ମଦେବ
        ରାଜ ଲକ୍ଷ୍ମୀଙ୍କର ଧବ ।
ଯାର ଭୁଜବଳେ                    କ୍ଷାତ୍ରବୃତ୍ତି ତେଜ
        କ୍ଷେତ୍ରବୃତ୍ତି କରେ କ୍ଷତ୍ରୀ,
ସେହ୍ୱସିନା ଭବେ                    ଧର୍ମ୍ମଧବ ସଦେ
        ଧର୍ମ୍ମେ ତତ୍ତ୍ୱ ଛତ୍ରୀ ।
ଦୃପ୍ତ ବ୍ରହ୍ମପୁଡ଼                    ଯାର୍ ଗଜବୃନ୍ଦ
        ମଦଜଳେ ପରରାଜ୍ୟ,
ଜମ୍ବାଲ ବନାନ୍ତ                    ପ୍ରଦ୍ୟୋତପାଁଗ ଏ
        ଭବେ ସିନା ସେହ୍ୱ ଅର୍ଘ୍ୟ ।
ଯଥା ଶିଶୁ କାଳେ                    କୌଶିକଙ୍କ ସଙ୍ଗେ
        ଯଜ୍ଞ ରକ୍ଷାବ୍ରତୀ ରାମ,
ତଥାତୋ କୁମାର                    ବନ୍ଧୁ ସଙ୍ଗେ ମିଶି
        ଜାଗିବେ ଏ ପୁଣ୍ୟଧାମ ।
ଉପାଧି ପିପାସା                    ନାହିଁ ମୋର ଦେବ
        କେବଳ ପବିତ୍ର କ୍ଷେତ୍ରେ,
ଯତ୍ନ କରୁଁଥିଲେ                    ଦାରୁବ୍ରହ୍ମ ମୂର୍ତ୍ତି
        ଦୃଶ୍ୟହେବେ ଜନନେତ୍ରେ" ।

ଯଜ୍ଞ-ଭବନସ୍ଥ— ଗୁରୁ ଗୁଣୀଙ୍କର
କଥୋପକଥନ ସ୍ଥଳି,
ବାରମଦେ ମତ୍ତ କଳଧୀର ମଧ
କର୍ଣ୍ଣ ପଠହରେ ବାଜି ।
ମଣିମଣ୍ଡ ପୀଠେ ବସାଇ ଧୀରଙ୍କୁ
ହେମ ମଣ୍ଡ କୁମ୍ଭଜଳେ,
ପ୍ରକ୍ଷାଳି ଶ୍ରୀଅଙ୍ଗ ମୃଦୁଳ ଦୁକୂଳେ
ମାର୍ଜି ସାର କୁତୂହଳେ ।
ମଣ୍ଡନ ବିଜ୍ଞାନ- କୁଶଳ ସେବକେ
ବସନା ଭରଣ ଆଦି,
ଗୋଟି ଗୋଟି ଥୋଇ ବସିଗଲେ ପାଶେ
ପ୍ରସାଧନ ବଧି ସାଧି
ଚନ୍ଦ୍ରିକା ଖଚିତ ସାନ୍ଧ୍ୟବୃତ୍ତ ଯଥା
ମେରୁ ଅଙ୍ଗେ ମନୋହର,
ସାନ୍ଦ୍ରଚନ୍ଦ୍ର ମିଶ୍ର- କୁଙ୍କୁମ ଶ୍ରୀଅଙ୍ଗେ
ଦିଶିଲା ତଥା ସୁନ୍ଦର ।
କୁସୁମ ସମ୍ଭବ- ଅଧ୍ୟାପକ ପଦେ
ବସାଇ ବାସ ବାଟକ,
ଶିଖିଲେ କୁଳିନ୍ଦୀ କୁମାରର ଅଙ୍ଗ-
ତୁଳନା ପ୍ରତ ବନ୍ଧକ ।
ଛେଦ ଯାବା ବଧି ଦହଲେ ସେବକେ
ଧୂପଧୂମେ ଧୋଇ କେଶ,
ଖଡ୍ଗ ରତ୍ନ ତଥା ନାହ ଶିଶୁ କରେ
ଦେବାକୁ ମଣିଲେ କ୍ଳେଶ ।

ମଲ୍ଲୀ କଢ଼ୀ ସଙ୍ଗେ ମିଶି କେଶ ପାଶ,
ଦିଶିଲ ଯେସନେ ସ୍ମର,
କୁସୁମ ବିଲୀନ- ଶିଳୀ ମୁଖ ଶ୍ରେଣୀ
ସାଜିଅଛି ଧନୂଃ ଶର ।
ଚିକୁର ଶୋଭାରେ ବରହି ଭ୍ରମର
ଜିଣିଥିବା ଭାବ ଥୀର,
ବହୁମୂଲ୍ୟ ରତ୍ନ — ପଟଳୀ ଲଳିତ-
ମୁକୁଟେ ମଣ୍ଡିଲେ ଶିର ।
କନକ ନିର୍ମିତ ଲଲାଟ ପଟ୍ଟିକା
ଭାଲ ମଣ୍ଡଳରେ ଶୋଭେ,
ଚିକୁର ବାରିଦ- ବୃନ୍ଦରେ ବିଜୁଳୀ
ଖେଳୁଛନ୍ତି ଅସି ମୋହେ ।
ମନୋଜ୍ଞ ଭ୍ରୂଲତା- ମଧ୍ୟରେ ସିନ୍ଦୂର-
ବିନ୍ଦୁ ଦେଲେ 'ମୋଦେ ରଞ୍ଜି,
ସଞ୍ଜିଲା ଯେସନ ଶୂଳ ନାସା ନଳୀ -
ମୂଳେ ଦେଲେ ବୀରେ ଖଞ୍ଜି ।
ବାଳକଟା ପୁଣି ଦଢ୍ୟୃ ଉପ୍ସୁରୁଁ
ନିର୍ମିଲେ କଜ୍ଜଳ ରେଖା,
ଉତ୍ପଳ ବିଜୟି- ନୟନ ନୃପତି-
ପଞ୍ଝୋଖା ପରୁ ଯା ଦେଖା ।
ବଦନ ଚନ୍ଦ୍ରମା କୁମାରର ମଣେ
ଚନ୍ଦ୍ରଲୋକ ସାର୍ବଭୌମ,
ନୋହିଲେ କାହିଁକ କୁଣ୍ଡଳ ଛଳରେ
ସେବୁଥାନ୍ତେ ବେନି ସୋମ ।

ଅଧର ଦଳରେ　　ତାମ୍ବୁଳ କାନ୍ତିକା –
ଚର୍ବଣ- ଜନ୍ମା ଶୋଣିମା
ହୃଦୟ କନ୍ଦରୁ　　ଅନୁରାଗ ରଙ୍ଗ
ଲଙ୍ଘି ଅବିଚ୍ଛିନ୍ନ ସୀମା ।
ଦଶନ ଦୀଧିତି-　　କରମ୍ବିତ ସ୍ମିତ,
ରକ୍ତରଦ ଛଦେ-ରଞ୍ଜି,
ପ୍ରବାଳ ଗରବ –　　ହରାଇ ହିମାଂଶୁ-
ଶୋଭାକୁ ମାରୁଛି ଗଞ୍ଜି ।
ଧୀର କଣ୍ଠ ତଟେ　　ଲମ୍ବାଇଲେ ଭୃତ୍ୟେ
ସ୍ଥୂଳ-ମୁକ୍ତା ମାଳିକା,
ସଜଳ ଯେସନେ　　ଓଳ ଦେହେ ଦୋଳେ
ଶ୍ରାବଣେ ଜଳ କଣିକା ।
କୁମାରଙ୍କ କର　　ମଣ୍ଡିଲେ କଂକଣରେ
କନକ ହୀର ବଳୟେ,
ରଖିବେ ଜଗତେ　　କୀରଯଶ ଯହୁଁ
ପୁରନ୍ଦର ପଦ୍ମ ଜୟେ ।
ଅନୂଢ଼ କୁମାର　　ଦୃଢ଼ କଳତ୍ରକୁ
ଭିଡ଼ିଲା ଶୃଙ୍ଖଳ ଯୁବା,
ସଙ୍ଗି ଶିଶୁ ଗଣ　　ଶ୍ଲେଷ ଅର୍ଥେ ହସି
କୁମାରଙ୍କୁ କଲେ ଉହା ।
କରଣା କୁଞ୍ଚିତ –　　ଭୂଷଣ ଦର୍ପଣେ
ନିଜକୁ ଦେଖିଲେ ନିଜେ,
ଅଦର୍ଶ ଅର୍ପଣ -　　ବଧୂ ନିରର୍ଥକ
ବୋଲି କଲେ ଧୀର ବକ୍ଷେ ।

ଭୂଷଣ ଭରରେ ଶୋଭିଲେ କୁମାର
କୁସୁମେ ଯେସନ କୁଞ୍ଜ,
ସାନ୍ଦ୍ର ଗନ୍ଧି ଭାବେ ଦେଶ ପ୍ରାନ୍ତେ, ପୁଣି
ଗୌରବେ ସାରସ୍ୱ ପୁଞ୍ଜ ।
ଯଜ୍ଞାଗାରେ ପଶି ନମିଲେ କୁମାର
ଜନକ ଜନନୀ ପାଦେ,
ସ୍ୱର୍ଣ୍ଣବର୍ମ୍ମେ, ସ୍ୱର୍ଣ୍ଣ - ଶିର ସ୍ତ୍ରାଣେ, ଅଙ୍ଗ
ଆବରି ମାତା ବଣାଦେ,
ବୋଇଲେ କୁମାର ଖେଳେଥିଲି ମୋର
ବାଲ୍ୟଖେଳ ରଣ ରଙ୍ଗେ,
ଉମାଙ୍କୁ କୁମାର - ପ୍ରାଏ ଜୀବଧନ!
ଦେଖାଇଅ ଫେର ନେତ୍ରେ ।
ମନାସିଲେ ରାଣୀ ଉମାପାଇ ପୁଣି
ବଡ଼ାଇ ସ୍ୱର୍ଣ୍ଣ କେଶରୀ,
ତଥାପି ଶୁଣିଣି ରତ୍ନେ ଥର ହର
ପିପ୍ପଳ ପତର ସରି ।
କହୁ ଧର୍ମ୍ମ ବୀର ଉର୍ଦ୍ଧ୍ୱେ ଚେଷ୍ଟ କର
ବୋଇଲେ ହେ ବୀର ଧୀର,
କର୍ମବୀର ପଣେ ଶୈଶବ ଜୀବନେ
ତବ ଯଶ ହେଉ ଚିର ।
ନୃପାଦେଶେ ଅଶ୍ୱ ଅଶ୍ୱଶାଳୁ ଆସି
ଯଜ୍ଞଦ୍ୱାରେ ହେଲା ଛଡ଼ା ।
ଗାଢ଼ବେଗେ ଯେହ୍ନ ଛଡ଼ା ସମୀରଣେ
ଲରନ୍ତର ଦଏ ବାଡ଼ା ।

ଘନ ଘୋଷେ ଯେହ୍ନେ　　ଇତସ୍ତତ ଧାଂବ
　　ଖେଳୁଛି ଅଙ୍ଗ ଗର୍ଜନେ,
ନୃପରେ ଥରବୁ　　ଦବାଲୁଛୁ ପୁଣି
　　ଯିବାକୁ ଯୋଦ୍ଧୃବନେ ।
ସମ ଗୁରଙ୍ଗମ –　　ସଙ୍ଗେ ଯୁଟିବାକୁ
　　ଘଉଛୁ ସେ ବାଜୀ ମନେ,
ଡାକୁଛୁ ଯେଯେଣୁ　　ହରୀଶୁ ଅଯୋଷ୍ଟ୍ର –
　　କରଣ-ଶିରଃ କମ୍ପନେ ।
ଉଦ୍‌ଗାରୁଛୁ ପୁଣି　　ଗଲୀନ ଚର୍ବଣେ
　　ଯେ ଧବଳ ଫେନ ଶ୍ରବ,
ମଣେ, ପ୍ରକାଶୁଛୁ　　ଧୀର କୁମାରର
　　ଭାବ ଫଳ ଯଶ ଅଙ୍କ ।
ପ୍ରଗ୍ରହକ ଗଣ　　ନେଥ୍ୟାଶ୍ୱ କଣ୍ଠରେ
　　ବାନ୍ଧଲେ ପ୍ରଚଣ୍ଡ ପତ୍ର,
ପିଙ୍ଗି ଗଲୀନକୁ　　ଫାଲ ଦେଲ ବଇ
　　ଲଙ୍ଘିଲ ଦକ୍ଷିଣା ପଥ ।
ଧୀର କୁମାରଙ୍କୁ　　ମଧ୍ୟ ଆଣି ଦେଲେ
　　ତଥାବଧ ଶ୍ୱେତ ବାଜ,
ସୁବର୍ଣ୍ଣ ନିର୍ମିତ-　　ପର୍ଯ୍ୟାଣ ଗଲୀନେ
　　ଯା ଅଙ୍ଗ ଅଛି ବସ୍ତ୍ର ।
ସାମନ୍ତ କୁମାର –　　ଗଣ କଣ୍ଠିବଡ –
　　ଦେବେ ଘେନ ସଙ୍ଗେ ସୈନ୍ୟ,
ଧୀରଙ୍କୁ ବସାଇ　　ହସ୍ତ ପୃଷ୍ଠେ ହସ୍ତେ
　　ବସିଲେ ପ୍ରକାଶି ଦୈନ୍ୟ ।

ଜଗଜ୍ଜମ୍ପାର ଧୀର— କୁମାରଙ୍କୁ ଦେଖି
ଅଁଟିଲେ ସ୍ୱତ କୁମାରେ,
ବହୁ ବାହନକୁ ଅନେକ ଯୂବତ
ଧରିଅଛୁ ଅଗ୍ର ଧାରେ ।
ଦ୍ୱବସ ମୁଖରେ ସହସ୍ର ମୟୂଖ
ପାବକୁଁ ଯଥା ସନ୍ଧ୍ୟା,
ମାଳବ ଉତ୍କଳ— ମଣ୍ଡଳରୁ ସେନା
ତଥା "ଧୀରେ" ଉପ ଜାତା ।
ମଦାକ୍ତ କପୋଳ ଗଜ ସ୍ୱଜ କୁଳ
କଣ୍ଠ କୁଳ ଝାଡ ଝାଡ,
ସର୍ବାଗ୍ରେ ଅଇଲେ ଉଡବାକୁ ଜବା
ତେଣା ଝାଡ ଗିର ଧାଡ ।
ଗଜ ଶ୍ରେଣୀ ପରେ ଅସିଲା ସ୍ୟନ୍ଦନ
ଉଡାଇ ପତାକା ବଳୀ,
ଅଶ୍ୱ, ବୃଷ ପୁଣି ଅସିଲେ ଶୁଅରେ
ଦୋଳାଇ ଙ୍କାର ପଗଡ ।
କୁମାରଙ୍କ ଅଗେ ଗାଇଲେ ମାଗଧେ
ଉଚ୍ଚାର ମଙ୍ଗଳ ବାଣୀ,
ଦର୍ଶାଇବା ଲାଗି ଡାକନ୍ତି କି ଭଟେ
ଦର୍ଶକ ବୃନ୍ଦଙ୍କୁ ଅଣି ।
ଗାଇଲେ ଗାୟକେ ବଂଶିସ୍ୱର ସଙ୍ଗେ
ମିଶାଇ ଗୀତ ଲହରୀ,
ହାଲଲ୍ ଯେ ଗୀତ ସୁଧା ଧୀର କଣ୍ଠେ
ସୁଧା ପୂର୍ଣ୍ଣ ସ୍ୱର୍ଣ୍ଣ ହରୀ ।

ବାଜଇ ବଜନ୍ତ୍ର   —ଦୁନ୍ଦୁଭି ଝଂକାରେ
ଟଙ୍କାର ଦଗ ଦଗନ୍ତ ,
ମନୋଜ୍ଞ କଂସାଳ   ବାଜି ସୂଚିଲା
ଶୁଭାଗ ମଙ୍ଗଳୋ ଦନ୍ତ ।
ବୀର ବଧୂ କୁଳେ   ସୁର ବଧୂ ବୃନ୍ଦ
ଭୂତଳେ କଲେ ନର୍ତ୍ତନ ,
ତଥ୍ୟବର୍ତ୍ମ ପଥେ   ମିଥ୍ୟା ଯୁଦ୍ଧକଲେ
ମୋଦେ ପଦାତିକ ଗଣ ।
ରଥ ଗଜ ଅଶ୍ବ —   ମାନବ ଶବଦେ
ପୂରଇ ଆକାଶ ଖଣ୍ଡ ,
ରଥ ଗଜ ଅଶ୍ବ —   ରେଣୁ କୁଜ୍ଝଟୀ ରେ
ଖଣ୍ଡ ଝଡ ପଲ ଖଣ୍ଡ ।
ପୁଷ୍ପ ବୃଷ୍ଟି ସେନା-   ପଥପଦେ ବର୍ଷି
ସ୍ୱଧ୍ୱଜ ସ୍ୱର୍ଣ୍ଣ କଳଶ ,
କରିକୁମ୍ଭେ ରଖି   ଦେଖାଇଲା "ବସୁ"
ଖଣ୍ଡେ ବିଦ୍ୟୁତ ସ୍ୱର୍ଗ ।
ପ୍ରସ୍ଥାନ ସମୟେ   ପ୍ରାସାଦ ଶିଖରେ
ପ୍ରବେଶି ବେଗେ ଅଙ୍ଗନା ,
ସସ୍ନେହେ ପିଙ୍ଗିଲେ   ଲଜ୍ଜା ବନା ଲାଜେ
ଭଙ୍ଗି,ଭ୍ରୂ ଅଧୋ ବଦନ ।।
ଉଦ୍ବେଗରେ କେହ୍ବ   ବାମା ଅର୍ପିଥିଲା
ନବାନ୍ଧି ଅଳକାମାଳ ,
ବଦନ ଚନ୍ଦ୍ରର   ଚଉପାଶେ ଦୋଳେ
ପଦ୍ମେଯଥା ଶୈବାଳ ।

କେହୁ ସୀମନ୍ତିନୀ ସୀମନ୍ତ ମଣ୍ଡିଛି
ଅର୍କିକ ମାତ୍ର ସିନ୍ଦୂରେ,
ଦଶେ ରକ୍ତଚୋଷ୍ଣା ସରସ୍ୱତୀ ଯଥା
ମିଳିଛି ନୀଳ ସିନ୍ଧୁରେ ।
ଅପର କାମିନୀ ଭାଲେ ଚନ୍ଦ୍ର ବିନ୍ଦୁ
ଅର୍ଦ୍ଧାକାରେ ଅଛି ଲେଖି,
ମଣେ ଶିବଶିର ଶଶୀ ଆସି ଅଛି
ଆନନ ଚନ୍ଦ୍ର ନ ଦେଖି ।
କେହୁବା କପୋଳେ ଲେଖିଛି କସ୍ତୂରୀ
ପାସୋର ଅନ୍ୟ କପୋଳେ,
ଏହିପରି ନାନା ବିଚେଷ୍ଟା ବହିଲେ
ଲଲନା ଲଲାମ ଭାଳେ ।
ଗବାକ୍ଷ ମାର୍ଗରେ କୁମାରଙ୍କୁ ଲକ୍ଷି
ଲଲନା ଭଣିଲେ ବାଣୀ,
ଏଣିଶୁ କେମନ୍ତେ ଅସ୍ତ୍ର ଆଣିବ ଗୋ
ରଣେ ଛଣି ବଜ୍ରପାଣି ।
ଶୈଶବ ସୁଲଭ କୋମଳତା ଅଙ୍ଗୁ
ଛୁଟି ନାହିଁ ସଖି ଲକ୍ଷେ,
କେଶ ଗୁଚ୍ଛ ଦେଖ ଶୋଭୁଛି ମସ୍ତକେ
ସମ୍ପୂର୍ଣ୍ଣ ବାଲ୍ୟ ସ୍ୱଭାବେ ।
କୋମଳ କବରୀ- ମସ୍ତକେ କୁଞ୍ଚିତ
ବହଳ କୁନ୍ତଳ ଅଛି,
ଉନ୍ନତ ବର୍ତ୍ତୁଳ ଉଷ୍ଣୀଶ ବନ୍ଧନେ
ଶିର ସ୍ଥାନେ ଅଛି ସାଜି ।

ଶିର ସ୍ତ୍ରାଣ ତଳେ          ବଦନ ଚନ୍ଦ୍ରମା
ବୀରବେଶେ ସାଜି ନାହିଁ ,
ବୀରୋଚିତ ଗୁଣ          ଧୀର କୁମାରଙ୍କୁ
ସ୍ପର୍ଶିଥିବ ଅବା କାହିଁ ।
ଅଶ୍ୱ ମେଧ ନୁହେ          ନରମେଧ ରାଜା
କରୁଛନ୍ତି ଯଜ୍ଞ ସ୍ଥଳେ ,
ମାଳବ ଉତ୍କଳ          ରାଜ ପୁତ୍ର କୁଳ
ମେଧ୍ୟ ହେବେ ରଣାନଳେ ।
କୁସୁମ କୋମଳ          କଳେବର, କୋଳ-
କରୁଛ ଯେ ସ୍ୱର୍ଣ୍ଣ ପାଙ୍କୁ ;
ଅଙ୍ଗ ରକ୍ଷା ଆଉ          ଭାଙ୍ଗିବ ସେଥରେ
ଅସ୍ଥି ପୁଞ୍ଜ ବଜ୍ର ବାଜୁ ।
ଅଙ୍ଗନା ବୃନ୍ଦର          ଅନାର୍ଯ୍ୟ ଆଳାପ
ବାଜିଗଲା ବନ୍ଦ କର୍ଣ୍ଣେ ,
ଉଚ୍ଚସ୍ୱରେ ଭଣେ          ଦଗ୍ଧପୁ ବର୍ଣ୍ଣନା
ରଞ୍ଜିବେ ଓଜସ୍ୱି ବର୍ଣ୍ଣେ ।
ଭବଯାଶା ଦେବା          ଚତୁରଙ୍ଗଚମୂ-
ଚକ୍ରର ପ୍ରୋଦ୍ଭୂତ ଧୂଳି ,
ଦଶଦିଗେ ପଶି          ଦଗଙ୍ଗନା ମୁଖେ
ଫଗୁପରି ଦେବ ବୋଳି ।
ଦ୍ରୁପଦ ପୃଥ୍ୱୀ -          ପୁରୁହୂତ ପୃଥ୍ୱୀ
ତବ ସେନା ପାଦଭରେ ,
କମ୍ପି ଲୁଣ୍ଠିବ          ନଗ ଧବ ବୃନ୍ଦ
ପ୍ରାଚୀର ପରିଖା ସ୍ଥଳେ ।

ଦେଖିବେ ସେ ପୁଣି                    କ୍ଷୌଣୀପାଳେ ଲୁଚି
ଚଉଦଗେ ଧୂଳି ବୃଷ୍ଟି,
ଦେଖିବେ ସେପୁଣି                    ସବାତ୍ମ ଶରୀରେ
ଉପୁଜୁ କଳଙ୍କ ସୃଷ୍ଟି ।
ଗଜ ଅଶ୍ୱ ଯେବେ                    ବାନ୍ଧିବ କେଶରୀ!
ଚତୁରଙ୍ଗ ବଳ ଅଣି,
ସର୍ବୈନ୍ୟ ଭାଣିବ                    ଲୋହାର ଧନ୍ୱରେ
ଶାଣିତ କୃପାଣେ ହାଣି ।
ନବକଙ୍କ କଣ୍ଠ                    ମୃଷ୍ଟୁ ମୁକ୍ତା ହାର
ପାନାସୃ କଣିକା କାର,
ପାରୁଲେ ଖସିବେ                    କଣ୍ଠୁ ସ୍ୱର୍ଗ ଲକ୍ଷ୍ମୀ
ତେଜି ନେତ୍ର ଅଶ୍ରୁଧାର ।
ଭୂମିର ପ୍ରତାପ –                    ତପନ ସବଂଧା
ଧରାକର ଅଲୋକିତ,
ନମେକ୍ଷ ଭୂପତି –                    କୀର୍ତ୍ତି ଚନ୍ଦ୍ରିକାକୁ
ସଦା କରୁ କବଳିତ ।
ଅବିରତ ରଣ ଦଣ୍ଡୀ–                    ହତ ବାଦ୍ୟେ
ସ୍ତମ୍ଭୀଭୂତ ବୈରୀ ବାହୁ,
ନାଗଳକ ମନ୍ତ୍ରେ                    ଭୁଜଙ୍ଗ ସଦୃଏ
ତେଜୁ ଅନୁଗତ ଦାଉ ।
ଦୃଢ଼ର ଲାଘବ–                    ବଣୁ ତବ ବାଣ
ପ୍ରତିପକ୍ଷେ ଅକ୍ଷି ଲକ୍ଷ୍ୟ,
ବର କେବଳ                    ବକ୍ଷ ଭେଦ କାଳେ
ସ୍ୱର୍ଗାଙ୍ଗନେ ହେବେ ଦକ୍ଷ ।

## ତୃତୀୟ ସର୍ଗ ।

### ( ସ୍ୱଗ ନଠ ବାଣୀ )

ଥିଲା ଉପ ଗତ　　ଏକାଳେ ଶରତ,
ସଦ୍ୱୃତ୍ତ ଯାତ୍ରାର୍ଥେ　　ଫିଟାଏ ଯେ ପଥ ।
ନିସ୍ତନ୍ଦ୍ର ଚନ୍ଦ୍ରିକା-　　ଗଙ୍ଗୋଦକ ଢାଳ,
ମେଘ ମଳୀମସ୍ତ　　ଅକାଶୁ ପ୍ରକ୍ଷାଳ ।
ଅମ୍ବରଚୁମ୍ବିତ-　　ତରଙ୍ଗ ସରିତ,
ପ୍ରଚଣ୍ଡମାର୍ତ୍ତଣ୍ଡ-　　କିରଣେ ଶୋଷିତ
କରି ଦେଲା ପୁଣି　　ସଦାଙ୍କ ତାବକ୍ଷେ,
ମଣେ ଉତ୍ପ୍ରେକ୍ଷୁ　　ମିତ୍ର ଧୀରପକ୍ଷେ ।
ନିଃଶେଷିତ କରି　　ଧରାରୁ କର୍ଦ୍ଦମ,
କଲା ଜଳାଶୟ୍ତୁ　　ମହାଶୟ ସମ ।
ଅସ୍ୱାଦ କରାଇ　　ହରଲତା ହଂସେ,
ନଚାଇ ତରଙ୍ଗେ　　ଅନନ୍ଦ ମାନସେ,
ଫୁଟାଇଲା ପଦ୍ମ-　　କୁଳେ ସ୍ୱଚ୍ଛନ୍ଦ,
ବନ୍ଦୀ ହେଲେ ମଧୁ-　　ଲୁବ୍ଧ ମଧୁବ୍ରତ ।
ପାହାଡା ପକାଇ　　କଲମ, ଲକ୍ଷ୍ମମ,
କରାଇଲା ବଳେ　　ବରଷା ବାଗ୍ମନ ।
ଶାସ୍ତେ ଅନର୍ଗଳ　　ଯଜ୍ଞୀୟତୁରଙ୍ଗ,
ସମୁଦ୍ର ପର୍ଯ୍ୟନ୍ତୁ　　ଘଉଡ କୁରଙ୍ଗ ।
ଦଉଡ ପଣିଲା　　ମହେନ୍ଦ୍ର-କାନ୍ତାରେ
ଭୋଜିଲେ ସୈନିକେ　　ତା ଗୋଡ ପନ୍ଥାରେ ।
ପଡ଼ୋଷ୍ମ ସ୍ରୋଅରେ　　ଅଙ୍କ ହାର୍ଦ୍ଦଗଢେ,
ସ୍ୱଚ୍ଛ ଯଥା ଜଳ-　　ଶ୍ରାନ୍ତମେଘବୃନ୍ଦେ,

ରଥଅଶ୍ୱସଙ୍ଗେ     ମହେନ୍ଦ୍ର- କନ୍ଦର ,
ମଣ୍ଡିଲେ ଯେସନେ     ଗଣ୍ଡଶୈଳେ ଭର ।
ଚତୁରଙ୍ଗ ରବ-     କନ୍ଦର- ନିବାସି-
କନ୍ଧଦମ୍ଭଙ୍କ     ସୁଖ ସୁପ୍ତି ନାଶି,
ଗୁହାସଙ୍ଗେ କର୍ଣ୍ଣ-     କୁହରେ ପ୍ରବେଶ ,
କରି ଅଣୁଥାଏ     ଅଶ୍ୱର ସନ୍ଦେଶ ।
ଅଶ୍ୱ ପଛେ ପଛେ     ଚତୁରଙ୍ଗ ଚମୂ,
ଦେଖିଲେ ମହେନ୍ଦ୍ର-     ଲକ୍ଷ୍ମୀ ଭ୍ରମୁ ଭ୍ରମୁ ।
ହିଂସ୍ର ପଶୁଏ     ଯାର ଶ୍ରେଣୀ ଚମୂ ,
ଉତ୍ତରେ ଉତ୍କଳ     ପୁଣି ଗଣ୍ଡାଳୟ ,
ଉତ୍ତର ସର୍କାର ,     ପ୍ରଭୃତି ବ୍ୟାପିଛି ,
ଯୋଡ଼ିଛି ଯାପାଦ     ମହୋଦଧି ବାରି ।
ନସ୍ୱନ ନପେସ୍ତ     ଯାର କାୟଶ୍ରେଣୀ ,
ଥର୍ଥର୍ କୂଳେ     ଧର୍ଷପୃଷ୍ଠବେଣୀ ।
ଅଞ୍ଜନ- ବିପିନ-     ବିଶାଳ- ଶିଖରେ ,
ଗାଢ ଭଉତ୍ର ଶୋଭା     ଶୁଭ୍ରମ୍ବର ଥରେ ।
ଯଥା ମେଘମାଳା     ଦୋଳିଛି ଚୂଳରେ ;
ଖେଳୁଛି ବିଜୁଳି     ବଲ୍ଲଭ କୋଳରେ ।
କାହିଁ ! ମୁକ୍ତୋପଳ-     ପ୍ରସ୍ଥ ବାରି ଝର ,
ଅସେ ହିମାଚଳୁଁ     ଗଙ୍ଗାପ୍ରାପ୍ତ୍ୟେ ଗଢ ।
ଭଗ୍ନରୁ ଭଗ୍ନକୁ     ଝାମ୍ପ ଦେଇ କାହିଁ ,
ବାଳ ବ୍ୟଞ୍ଜନରୁ     ବଳି ଶୋଭୁଥାଇ ।
କାହିଁ ପୁଷ୍ପ ପୀତ-     ଚମ୍ପକ କୁଞ୍ଜରେ ,
ବନଦେବୀସ୍ୱର୍ଣ୍ଣ-     ମଣ୍ଡପ ପ୍ରକରେ !

ବହଳ ଜଳର        ଅଛପତ୍ର ସନ୍ତି,
କାହିଁ ରହିଅଛି        ଶିଖର ଅଖଣ୍ଡ ।
କାହିଁ କୁଂକୁଣ୍ଡେ        ଶୈବାଳ ବଲ୍ଲରୀ,
ପ୍ରୋଷିତା- ବଦନେ        ଅଳକା ର ପରି ।
ବିକଶିତ ଦଳ-        ତମାଳର ତଳେ ,
ଶୋଇଛନ୍ତି କାହିଁ        କୁରଙ୍ଗ ସକଳେ ।
ମୁକୁଳନ ପୁଷ୍ପ        ବାସ ବାତ ହରି ,
ଗିରିନଦୀଦେହୁ        ଅମ୍ବୁ କଣା ଧରି ,
ବିକଚ-କଦଳୀ-        ଚାରୁପତ୍ରାବଳୀ ,
ବ୍ୟଜନ ଢ଼ାଳୁଛି        ଧୀରେ ଧୀରେ ଚଳି ।
ପକ୍ୱପୁଷ୍ପଫଳେ        ସାନ୍ଦ୍ର ଦ୍ରୁମ କୁଳ ,
ପୁଷ୍ପରସଯୋଗେ        ମଧୁପେ ଅକୁଳ ।
ମାନ୍ତ୍ରିକ କୁସୁମ        ରସ ପାନେ ମତ୍ତ ,
ଗୁଞ୍ଜାରବେ ତନ୍ଦ୍ରା        ଭଙ୍ଗେ ମଧୁବ୍ରତ
କାହିଁ ବଳ ଦର୍ପେ        ଗୁହାରେ ମୃଗେନ୍ଦ୍ର ,
ହୁଙ୍କାରେ କମ୍ପାଇ        ପକାଏ ମହେନ୍ଦ୍ର
ବାମା ସଖ କାହିଁ        ବନେଚର, ଶିଳା-
ପର୍ଯ୍ୟଙ୍କେ ଅନୁଭୂ        ବସିଛି ମଣ୍ଡଳୀ ।
ଗିରିନଦୀ ହ୍ରଦେ        କାହିଁ ବା କୁଞ୍ଜର,
ବୁଡ଼ୁଛି ଉଡ଼ୁଛି        ଗଗନେ ଭ୍ରମର ।
କେବେ ଶୁଣ୍ଡା ଟେକ        କ୍ଷେପିଦେଲେ ଜଳ,
ମଧୁପଙ୍କପାଳେ        ଫଳେ ମନ୍ଦ ଫଳ ।
ଅଖିଳ ଚୂଳଶ୍ରୀ-        ଭୂଷଣ ମଞ୍ଜୁଷା,
ମହେନ୍ଦ୍ର ଗଣ୍ଡାମେ        ମଣ୍ଡିଛି ମଞ୍ଜୁଷା ।

ଅରୁଣ ଉଦୟେ ପ୍ରାଚୀ ପ୍ରଦେଶ ,
ମଣ୍ଡିଥାଏ ଯାର ଛାୟାଲୁବ୍ଧକେଶ ।
ଶଙ୍ଖଶତଶୃଙ୍ଗ- ମଘବା ମହେନ୍ଦ୍ର ,
ଦେଖିଲେ କଳିଙ୍ଗ କୁଳାଚଳ କେନ୍ଦ୍ର, ।
ନବଦଳଦଳ- ଶ୍ୟାମଳ ଦୂରୁହେ ,
ଅଚ୍ଛନ୍ନ ଯେ ବୃକ୍ଷ- ପ୍ରାଏ ତନୁରୁହେ ।
ଯେ ଗିରିଗର୍ଭରୁ ଜନ୍ମି କ୍ଷୁଦ୍ର କୁଲ୍ୟା ,
ଭାର୍ଗବଙ୍କୁ ଯେବ ଭବେ ଋଷି କୁଲ୍ୟା ।
ସେ ଚୂଡା ଦର୍ଶନେ ଉତ୍ସୁକ କୁମାର ,
ଲଙ୍ଘୁ ଉପତ୍ୟକା- ଅଧିତ୍ୟକା- ଦ୍ୱାର ,
ସରନ୍ଧ୍ର କୀଚକେ ଗଭ ଭର ବାତ ,
କ୍ୱଣନଚ୍ଛଳରେ ପୃଚ୍ଛିଲା ସ୍ୱାଗତ ।
ପୁଷ୍ପ ଫଳନତ- ଲତା କଳେବର-
କୁଞ୍ଜଦେବୀ ପୁଷ୍ପେ ପୂଜଣ ପଯ୍ୟୃର ,
କ୍ରେ ଲମ୍ବର ରବ ହୁଲ ହୁଲ ଦେଇ ,
ବନାପନାବଧି କଲ୍ଲ କ୍ଷ ବନ୍ଦେଇଁ ।
ପବମାନ ବେଗେ ଅବଗାହ୍ୟ ଦୂରେ ,
ଡାକି ଚେଲ୍ଲ ଠାରୁ ଶାଖି- ଶାଖା- କରେ ।
ତୃଣଶସ୍ୟାଚ୍ଛନ୍ନ- ନୀପକନ୍ଦତଳେ ,
ବସାଇ ଯାତ୍ରିଙ୍କୁ ସେବେ କୁତୂହଳେ ।
ଶରଦ୍ବକର- ସନ୍ତାପ ତନୁରୁ ,
ହରନ୍ତେ ଗନ୍ଧର୍ବେ ଚଳ ଗ୍ରହୁ ଦୂରୁ ।
ଅକାଶପଞ୍ଚାରୀ ସାରସର ଶ୍ରେଣୀ ,
ବାନ୍ଧୁଛନ୍ତି ଊର୍ଦ୍ଧ୍ୱେ ସ୍ୱର୍ଗକୁ ନିଃଶ୍ରେଣୀ ।

ଜନ୍ମେ ନିର୍ଝରିଣୀ    କଳକଳନାଦେ ,
କପଟେ କି କହେ ?    ସେବି ପିତୃ ପାଦେ ।
ପବନହିଲ୍ଲୋଳେ    ଦୋଳେ ବନ-ଦେବୀ ,
ନାଚେ ଭୃଙ୍ଗଗୀତ    ଗାଇ ଗିରି ସେବି ।
ଅବାଚୀ ପ୍ରତୀଚୀ-    ଉଦୀଚୀ ଶ୍ରେଣୀରୁ ,
ଉପଶ୍ରେଣୀସଂଖ୍ୟ:    ଦେଖି ସେ ଶିଖରୁ ,
ଦେଖିଲେ ମିଳିବେ    ଅରଣ୍ୟାନୀ ଛତ୍ର ,
ଶୋଭୁଛି ସମୁଦ୍ର    ଇନ୍ଦ୍ରମଣି ଭତ୍ତି ।
ମହାରଣ୍ୟ ବକ୍ଷେ    ଯେସନ ଶିଖର ,
ଗର୍ଜୁଛି ଯା ଅଙ୍କେ    କଲ୍ଲୋଳ ପ୍ରଖର ।
ବୋଇଲେ ସେମାନଙ୍କେ    "ବଢ଼ିମଲ୍ଲ ପିତ୍ର ,
ନୋହିଲେ ସଙ୍କଟ    କାହିଁକି ହରିବ" ।
ଉଚ୍ଚ ପଦାନ୍ବେଷୀ    ମହାଶମ୍ଭୁ ପରି ,
ଉଚ୍ଚନୀଚ ଦୃଷ୍ଟି    ଗଲା ଅପସରି ।
ଏଅନ୍ତେ ମଣ୍ଡିଲେ    ଧସ୍ୱଳ ଧୀର ,
ଅବତରି ଶୈଳୁଁ    ଯଥା ଗଙ୍ଗାନୀର ।
କୋଳାହଳ ନାଦେ    ଗହଳି ବାହିନୀ ,
ଉପତ୍ୟକା ପଥେ    ଯଥା ନିର୍ଝରିଣୀ ।
ବିଷମ ଉନ୍ନତ    ଉପତ୍ୟକା ପନ୍ଥା ,
କାହିଁ ବୃକ୍ଷକୁଳେ    ଝଙ୍କ ସଙ୍କୀର୍ଣ୍ଣତା
ପଡ଼ିଅଛି ଲଙ୍ଘି    ଗିରିନଦୀ ବକ୍ଷେ ,
ଜୀବିତ ପ୍ରସ୍ତର    ଜନ୍ମଭୂମି କକ୍ଷେ ।
ଯାଉଁ ଯାଉଁ ସେନା    କଲେ ବନେ କ୍ରୀଡ଼ା,
ଯାଶୋଭିରେ କରେ    ଚୈତ୍ରରଥ ବ୍ରୀଡ଼ା ।

ଅଶୋକ, ରସାଳ, କଦମ୍ବ ଶାଖାରେ,
କୁସୁମିତଲତା ଥିଲି ଲମ୍ବାକାରେ ।
ପଥଶ୍ରାନ୍ତ ସେନା ଅବସାଦ ହରି,
ବସାଇଲେ କୋଳେ ସୁବାସ ବିତରି ।
ରସାଳ ସାଳର ତଳେ ବସି ସେନା,
ଶୁଣିଲେ ଭ୍ରମର- ଗୁଞ୍ଜୁ ଗୁଞ୍ଜୁ ବୀଣା ।
କେଅବା ବଟର ଅବରୋହ ବାନ୍ଧି,
ଦୋଳଇ, କେଅବା ଡାଳେ କରଛନ୍ଦି ।
ପଥ ଶ୍ରାନ୍ତି ଅବ— ସାଦ ଅପନୋଦ,
ବହୁ ସେନାଙ୍କଲେ କଳରେ ବିନୋଦ ।
କୃଷ୍ଣାଗୁରୁ ମିଶ୍ର ମୃଗନାଭି ମଦେ,
ବସିଲି ବାହିନୀ ଜହ୍ନୁକନ୍ୟାପଦେ ।
ଗଜପରି ଜନେ ଜନପରି ଗଜେ,
ପିଇଲେ ସଲିଳ ବୁଡ଼ ଜଳ ବ୍ରଜେ ।
କଳଜ କୁସୁମ କରେ ଧରି କେହି,
ଖେଳିଲେ ସଲିଳେ ସରଜ ଲହରୀ ।
ହଂସ ପରି ଜନେ ମନ୍ଦାରି ସ୍ରୋତରେ,
ଛିନି ଡ୍ରାଏ ବୁଡ଼ ପାନୀୟ ଭିତରେ ।
ମସ୍ତକ ଆବରି ଜଳାକ୍ତ ବସ୍ତ୍ରରେ,
ବସିଯାନ୍ତି ଜଳେ ଶୀତଳ ତଟରେ ।
ଧୀବର୍ଭ୍ଙ୍କେ ବେଗେ ଜଳେ ଦେଲେ ଝାମ୍ପ,
ପ୍ରତନ୍ୟାକ୍ଷେ ତାଙ୍କୁ ଚଉଦଶ୍ଚ ଅ ;
ଏହିରୂପେ ରହି ଅରଣେ୍ୟ ଅନନେ୍,
ଉପନୀତ ହେଲେ ପୁଣି ଜନପଦେ ।

ଯହିଁ ଶରତର　　ପକ୍ୱଶାଳ କ୍ଷେତ୍ର,
ଗ୍ରାମ ଚତୁଃପାର୍ଶ୍ୱେ　　ହରୁଅଛୁ ନେତ୍ର ।
ମହୀରମା କିବା　　ପୀତପଟ୍ଟ ଶାଢୀ,
କେଦାର ଛଳରେ　　କରି ପରିପାଟୀ ।
ଢାଙ୍କିଅଛୁ ଅଙ୍ଗ　　ପାଣିପାଟଗଡ,
ଶୋଭୁଛୁ ଯେଜନ୍ତ-　　ନାଭି ଧ୍ରାଣମାଡ ।
ଦୁଇତ ବାଟ୍ୟର　　ତାଳ କରତାଳ,
ମାରି ଗାଇଁ ଗୀତ　　ଛଗି ପକ୍ୱ ଶାଳ,
ଶାଳ ଗୋଛୀ ଯହିଁ　　ଅର୍ଣ୍ଣି ଇକ୍ଷୁ ତୃଷ୍ଣା,
ଡଉଦେଉଥାନ୍ତି　　ଶୁକ, ସାରି, ବାୟା, ।
କାହିଁ ସରତୀରେ　　ଗ୍ରାମର ପ୍ରାନ୍ତରେ,
ଚରୁଛନ୍ତି ଧେନୁ　　ଘେନ ବତ୍ସଙ୍କରେ
ଦଶନ୍ତି ଦୂରକୁ　　ଯେସନେ ଗ୍ରାମଣୀ,
ବସାଇ ଅଛନ୍ତି　　ପ୍ରସ୍ତର ଦ୍ୱପଣି ।
ସୁଧା ସୁଧାକର　　ଦୁଗ୍ଧ ପରିପୂର୍ଣ୍ଣ-
ସ୍ତନ ଭରେ ଯାଙ୍କ　　ମନ୍ଥର ଗମନ,
ଜଳ ଦର୍ପଣରେ　　ପ୍ରତିବିମ୍ୱ ଯେହ୍ନ,
କାମଧେନୁସମ　　ଉର୍ଦ୍ଧ୍ୱ ପାଦ ଦେହ୍ନ ।
ବଳ ବର୍ଦ୍ଧେ ଯହିଁ　　ହଳଧରିବର୍ଗେ,
ମଲ୍ଲୁଛନ୍ତି ଶସ୍ୟ　　ବେଙ୍ଗଳା ଅବର୍ଗେ ।
ମହେନ୍ଦ୍ର କାନ୍ତାରେ　　ଜନପଦେ ଧୂର,
କଳିଙ୍ଗ ଭୂପତି　　ଅଭିମାନ ଚୂର,
( ଗଜଗଣ୍ଡୋପଲେ　　ଧୀରେନ୍ଦ୍ରଙ୍କ ମାର୍ଗ
ରୁନ୍ଧୁଥିଲେ ଯେହ୍ନ　　ତିଳ୍ଲ ପନ୍ଥ ଆଗ )

ଉପନୀତ ହେଲେ   ସାଗର ସୈକତେ ;
ବେଳା ପ୍ରାନ୍ତେ ଯେବେ   ପୌର୍ଣ୍ଣମାସୀ ଅନ୍ତେ ।
ଦେଖିଲେ ସାଗର   ନୀର ଆସ୍ତରଣ ,
ଗୁଡ଼ାଇ ଗଡ଼ାଇ   ଅଗଣ୍ୟ ଅୟନ ,
ଫୁଲନେ ଯିବାଇ   ମାଗଧ ପଗ୍ରଏ ,
ନଭନ୍ତର ଧୀର-   ସ୍ତବ କବା ଗାଏ ।
ତସ୍ୱବ୍ନୁ ଘେନ   ପ୍ରାଚୀ ଦିଗଙ୍ଗନା
କରୁଅଛୁ ପୁଣି   ଧୀର ବନ୍ଦ୍ୟପନା ।
ବନ୍ଦାପନା ସଙ୍ଗେ-   ସଙ୍ଗେ ବର୍ଦ୍ଧାପନା ,
ହେଉଅଛୁ କ୍ଷିପ୍ର   ମୁକ୍ତା ଚଲକଣା ।
ଏହୁ ଦୃଶ୍ୟ ଦେଖି   ସମୁଦ୍ର ପନ୍ତାରେ ,
ଉପନୀତ ହେଲେ   ମଳୟ କାନ୍ତାରେ ।
" ତପନ ତନୟ-   ତରୁଣୀ ଅଶାରେ ,
ରହିଲେ ଅଗସ୍ତ୍ୟ   କଳଙ୍କ ରସାରେ ;
ମଣିରତ୍ନ ହେଲେ   ନଭାନ୍ତ ନାସ୍ତ୍ରଭ ,
ତଥାପି ତପନ-   ବଧୂର ବିଭବ ।
ମଳୟ ମେଦୁର-   ମଳୟ ଶିଖର-
କୁଟଳ କାଟିଦେଇ   କପାଳରେ କଲୀ,
ପ୍ରକାଶି ସୁଗନ୍ଧ   ମଳୟ ପ୍ରଶ୍ୱାସ ,
ହୋଇଛୁ ଭୁଜଙ୍ଗୀ   ଭୁଜଙ୍ଗ ଆବାସ"
ବୋଲି ସେନା ଉପ୍ରେ   ତେଜସେ ଅରଣ୍ୟ ,
ଅଣ୍ଡିଲେ ଶାମଳ   ସହ୍ୟାଦ୍ରି କାନନ ।
ଯହିଁ ବହୁ ନାଲ   ବୃକ୍ଷରେଖାକାର ,
ବକ୍ଷ ବଢ଼ାଇଛୁ   କାଣ୍ଡାକାର ଧାର ।

ଯେ ପ୍ରବାହ ପଡ    ଦାକ୍ଷିଣାତ୍ୟ ବକ୍ଷେ,
ଶୋଭୁଛ ପାବ୍ଭୁତା-    ପ୍ରାଏ ବପ୍ରକକ୍ଷେ ।
"ଦେଖ ଗୋଦା, କୃଷ୍ଣା,    କାବେରୀ, ଏବନେ,
କ୍ଷୀଣ ସ୍ରୋତେ ବହୁ-    ଅଛୁ କଲସ୍ୱନେ ।
ଏବନ୍ଧୁ ସ୍ରବଣ    କନକ ଛନଶ୍ରୀ,
ହରିଥିଲା ଏଲା —    ସୁପର୍ଣ୍ଣ ଅଲଶ୍ରୀ"
ଲୁବାକୋବ୍ଦ ହୋଇ    ଯକ୍ଷାତ୍ମ କଳିଲେ,
ଟେଷ୍ଟଇବାଲାଗି    କ୍ଷେତ୍ରଲେ ତରଲେ ।
ପାଇ ହେଲେ ଭହୁଁ    ଛପଣୀ ର ବକ୍ଷ,
ରକ୍ଷି, ସେନା ପ୍ରାଚୀ-    ଚବ୍ରପଟେ ଲକ୍ଷ୍ୟ ।
ବନେବନେ ସ୍ରମ-    ପଦାଙ୍କ ପ୍ରଣମି,
ଅଶ୍ରମେ ଅଶ୍ରମେ    ମୁଛପାଦେ ନମି ।
ଦଣ୍ଡକ କାନନ-    ଶ୍ୟାମ ମାଳ ଭୂମି
ଯହୁଁ ବେନ ସ୍ରୋତ    ନାନା ସ୍ଥାନ ଘୂମି
ପଡନ୍ତୁ ପ୍ରତୀଚୀ-    ପ୍ରାଚୀ-ପାଗ୍ରବାରେ,
ଭରତ ଧାମର    ମାନ ଦଣ୍ଡାକାରେ ।
ଅତନମି ତାକୁ    ପୂର୍ବ ସ୍ରୋତ ସ୍ୱିନୀ,
ଅନ୍ବେଷ୍ଟୁ ଦେଖିଲେ    "ପ୍ରେତ ଉଦ୍ଧାରଣୀ" ।
ମ୍ରୋତର ସଙ୍କେତେ( ୧ )"ପାଇର" ସେନାଙ୍କୁ,
ଦର୍ଶାଇଲା ନେଇ    ସୁଖାନ୍ତ ସୁତାଙ୍କୁ ।
ପରମ କନକୀ    ଚସୋପ୍ତଲା ମୁଗ,
ଦେଖି ପାସୋରଲେ    ବୈଦେଶିକ ଦୁଃଖ ।

---

( ୧ ) ପ୍ରେତ ଉଦ୍ଧାରଣୀର ଅପର ନାମ ପାଇର ।

ଅଷ୍ଟବାରକୁଣ୍ଡା ତୁରଙ୍ଗେ ଶିର ଠେକ ଆକାଶେ ,
ଗ୍ରହ ରହନ୍ତ୍ର ବିପକ୍ଷ – ଅଶ୍ବ ହିଂସିବା ଅଶେଷ ।
ଅସୁରନ୍ଦ୍ର ପଲ୍ଲେ ଅସଂଖ୍ୟ ଉଚ୍ଚେ ହୋଇ ପଦାତି ,
କହନ୍ତ୍ର ବୃଣବଣ ଯେ ବହୁଚଣ୍ଡରେ ମାତି ।
ତିମିର ପଟଳ ଶ୍ୟାମଳ -ଦେହେ ମୟୂରପୁଚ୍ଛ ,
କହ ନାବୃନ୍ଦନ୍ତ ରଣେ ଯେ ମଣି ଜୀବନ ତୁଚ୍ଛ ।
ଏପରି ଭୈରବ ବାହିନୀ ଦଶ ଦିଗନ୍ତ ବ୍ୟାପି ,
ଦେଖି ପ୍ରମୁଦିତ କେଶରୀ ହୃଦେ ସାହସ ସ୍ଥାପି ।
ନୃପାଦେଶେ ରଣଦୁନ୍ଦୁଭି ବାଜୁ ଅସିବଲ୍ଲରୀ ,
ଉଷ୍ଟଶ୍ରେଣୀକରେ ଖେଳନ୍ତି ଘନେ ବିଜୁଳି ପରି ।
ବାଜି ପୃଷ୍ଠେ ବହୁବୀରମ ଗଜେ କଲେ ଗର୍ଜନ ,
ଲୌହବର୍ମ ପାଦେ ତୁରଙ୍ଗେ ଧରି କଲେ ଗମନ ।
ସ୍ବର୍ଣ୍ଣଦୋଳି କରଣିକରେ ଗଜ ବଜାଇ ଆଶା ,
ସୁତମାଳା ଦେଇ ଗାଇଲେ ନୃପ ବାହୁପ୍ରଶଂସା ,
ପୁଲକ-ଅଙ୍କୁରକଣ୍ଟକ -ଦେହ ବର୍ମେ ଢାଙ୍କିଲେ ।
ସୁଗନ୍ଧ କର୍ପୂର ପତ୍ରାଏ ପାଣ୍ଡୁହାସ ହସିଲେ ।
ମଙ୍ଗଳମୌକ୍ତିକ-ଅକ୍ଷତ ଘେନ ଉଜ୍ଜ୍ୱଳରଙ୍ଗ ।
ବିକ୍ଷେପିଲେ ବୀରପୃଷ୍ଠରେ ବହୁ ଭୈରବ ସ୍ତବା
ବାଜିଲା ରଣମୃଦଙ୍ଗ ଧୀର ଗମ୍ଭୀର ଭାବେ ।
ଶତଦଳ ଦଳ ଅଙ୍କିତ ପଟ୍ଟଦନ୍ତୀ ସ୍ୱପାଟେ ।
ଭଞ୍ଜନବୀପ୍ରାନ୍ତେ ଉଡ଼ିଲା ହୁଇ ଗୀର୍ବ୍ବ ବାହିନୀ,
ମହାନଦୀ ବକ୍ଷ ଢାଙ୍କିଲେ କୋଲାହଳ ନାଦିନୀ ।
ଏକାଳେ କେଶରୀ ପଶିଲେ ରଣେ କେଶରୀ ସମ,
ତୀକ୍ଷ୍ଣବାଣିଅଂ ମଣ୍ଡିଲେ ଶୂଳ ଦଣ୍ଡି ଶିବସୀ ।

କାଟି ଅସି ଚେଷ୍ଟେ ବିପକ୍ଷ— ଭଟ୍ଟକୁମ୍ଭ ଅବଳୀ,
ବର୍ତ୍ତୁଳେ ବୀର ଯଯାତି ରଣଚଣ୍ଡୀଙ୍କି ବଳି ।
ନିଃସର କୁଞ୍ଜର କୁମ୍ଭରୁ ଅନବ୍ରତ ଝଟକ ,
ସର୍ଜି ରଣଭୂମି ରଞ୍ଜିଲ ରକ୍ତ କୁସୁମସ୍ତବକ ।
କ୍ରୋଧେ ପ୍ରତିଯୋଧେ ବନ୍ଧିଲେ ସନ୍ଧ୍ୟାଗୀତ ଶବ୍ଦାଳୀ
କବୀଶଳେ ବୀର କୌଶଳେ ମନ୍ତ୍ରମାତଙ୍ଗ ଚୂଲି ।
ସତୋମର ଶର ଅଗ୍ରିରେ ପୁଣି ଦନ୍ତୀଦନ୍ତ ,
ଛେଦି ଶୋଷିନେଲେ ଅସଂଖ୍ୟ ପ୍ରାଣ ଅବ୍ରାନ୍ତ ।
ଝଟିଚେଷ୍ଟେ ଛିଣ୍ଡି କନ୍ଧରୁ ଅଶ୍ୱାରୋହଣ ମସ୍ତକ ,
ନାଚଇ କବନ୍ଧ ,ନାଚିଲ ସ୍ଵର୍ଗଦୂତ ଦର୍ଶକ ।
ଖେଳିଲେ ରଣରେ ଅପାର ପାଇ ବିପକ୍ଷ ଦନ୍ତୀ ।
ପଳାଇଲ ଛନ୍ନ ସ୍ଵପକ୍ଷ ସେନାପାଟର ମଣ୍ଡି ।
ତୁରଙ୍ଗ ବାଣେ ଘଣ୍ଟି ତ ବୀର କର କଟେକ ,
ତୁରଙ୍ଗପଞ୍ଚବାଣ କାଟ୍ଟାଏ ରଚି ବନ୍ଧ୍ୟ ଛୁଟେଇ ।
କଷ୍ଟପାଟେଦ ବୀର ବିପକ୍ଷ-- ଭଣ୍ଡ କପାଳଲୁଟି ,
ଭଞ୍ଜିଲେ ଭୈରବସମର — ଝେଟେଏ ବିଛ କୁ ,କୁଟ୍ଟି ।
ସମର କେଶର ସମୀପେ ଝଟଣେ ଶର ବର୍ଷି ,
ରକ୍ଷିବାକୁ କେହି ସମର୍ଥ ହେଲେନାହିଁ ଭରଷି ।
ପ୍ରଳୟ ପ୍ରଦୀପ ସଂରେ ବେଳ ବଳେ ମିଶିଲେ ,
କୋଷୁଁ କରବାଳ ଆକର୍ଷି ବାରବପେ ବସିଲେ ।
ଫଟେଲେନ ଫଳ ପଞ୍ଚ ଏ ମୁଣ୍ଡ ଅଗଣ୍ୟ ଖଣ୍ଡ ,
ରଣଚଣ୍ଡୀ କର ତରଣେ ହେଲ ଖର୍ପରଗୁଣ୍ଡ ।
ଅଗାଧ ରୁଧିର ସ୍ରୋତରେ ଭାସି କବନ୍ଧ ଖଣ୍ଡ ,
ତ୍ରଦାପି ହୁଙ୍କାର କରଣେ ଦିଶିଗଲ ପ୍ରଚଣ୍ଡ ।

ଧନ୍ୟସେ ପ୍ରତାପ ଶୂରର ଶିରଧାରାରେ ପଡ଼ି ,
ଶତ୍ରୁବୃନ୍ଦ ଗର୍ବେ ତରାଟି ଖରରସରେ ଜଡ଼ି ।
ଅସ୍ତ୍ରଘର୍ଷଣରୁ ଖସିଲେ ରଣେ ଅନଳକଣା,
ଡକ୍କାଏ ପିଶାଚ ପିଶାଚୀ --- ପାକ ହିଯୁ! ଉକର୍ଣ୍ଣା ।।
ଅଘୋରଣ ବାଣେ ମୂର୍ଚ୍ଛିତ କରିକୁମ୍ଭେ ଢଳିଲେ,
ଲଭିଲେ ଚେତନା! ଅଚିରେ କର୍ଣ୍ଣିବ୍ୟଜନାଡିଲେ ।
ପ୍ରହାରକ୍ଷକଣ୍ଠେ ପ୍ରହାର କଣ୍ଠଖାର କୁଠାର ,
ସ୍ୱପକ୍ଷଯୋଧଙ୍କୁ ଦର୍ଶାଉ — ଥିଲା ପୁରୁଷକାର ।
ଏକାଳେ ବିପକ୍ଷକୁଞ୍ଜର ଦନ୍ତେ ବସାଇ ଦନ୍ତୀ,
ଦେଲା ଶୁଣ୍ଡାଦଣ୍ଡେ ବୀରର ବକ୍ଷପଞ୍ଜର ମନ୍ଥି ।
ପ୍ରତିଭଟପଙ୍କେ କେଉଁଠ ଯୁଝୁଁ ଶୂର ପଡ଼ିଲେ,
ମଞ୍ଚେଣେ ନଡ଼ଶୁ ପରର କରବାଳ ଟାଣିଲେ ।
ଝୁଝୁଥିବାଯାଏ ଶୂରନ୍ତ ଚେନ୍ଦ୍ରେନାଙ୍କ ସମର,
ଯତେଣ ରକ୍ତିଦେହେ ଦୃଢ଼ି ମଣେ ମହାନ୍ତ ନର ।
ଭୂଶ୍ୱରପୂରିତ କପାଳ କର୍ଣ୍ଣ ଢାଲ କରନ୍ତି ,
ଶୀତଳନ୍ତି ଯାହିଁ ଅଗର- ମୃଦ୍ଭୂଷାପତ ସନ୍ଧି ।
ଏକାଳେ ଦ୍ୱେଷୀର କୃପାଣେ କର୍ଣ୍ଣପୃଷ୍ଠ କାଟିଲା ,
କରେ ସେ କୃତାନ୍ତରଷକ -- ପାଶ ଟିଧାନଛିଲା ।
ଗୋଲସମରେ ଝଯାତ- ବଳପ୍ରଳୟାନିଳେ,
କୁଲାସ୍ତୃପ ପ୍ରାୟେ ଉଡ଼ିଲେ ରଣେ ନରବୃନ୍ଦ ଭିତ୍ତେ ।
ଉଡ଼ିଲା ବିଜୟପତାକା ବାଛୁଁ ବିଜୟଦ୍ୟୁତିକା ,
ପଡ଼ିଲା ବିଜିତ ପତାକା ବହୁ ବିବିଧ ଶଙ୍କା ।
ଅସିତ ପତାକାବଦନ ଚୁମ୍ବି ଧୂଳିଗୁଣ୍ଡ ,
ଅନନେ ପତ୍ନୀଗଣ- ତ୍ରାନ୍ତ ଦିତ୍ତଲା ଦୁଃଖ ।

ତଥା ଦୃପ୍ତ କେଶରୀ ମୃଗେନ୍ଦ୍ର କରିକୁମ୍ଭେ ପଡ଼ି ,
ଭ୍ରମ ଜଙ୍ଘାଉରୁ ମସ୍ତ୍ୟାଙ୍କ ରକ୍ତ ସ୍ରୋତରେ ଗଡ଼ି
ଶତଶତ ଶିବା ଶାର୍ଦ୍ଦୂଳୀ, ଶ୍ୱାନ,ପାଇ ପ୍ରସାଦ ,
ବାଢ଼ିଲେ ,ଗୋଡ଼ାଇ ପୃଷ୍ଠରେ ମାରି ଅସଂଖ୍ୟ ବ୍ୟାଧ॥
ବୀରବିଳାସିନୀ କନ୍ଦନ — ଶିଳ୍ପ ବ୍ୟାଧ ନଗରୀ ।
ଘୋରଛିଡ଼ଧନୁ ଶତ୍ରୁର ଦେଖି ବୀରକେଶରୀ ।
ଚକ୍ରଲକ୍ଷ୍ମୀ ବିନା ଲୁଣ୍ଠନ କଲେ ଶ୍ରୀକ୍ଷେତ୍ରସ୍ଥଳେ ,
ବିଭୂପବି ବିନା ଉଦ୍ଧାର ଗୁଚ୍ଛ ଅନ୍ୟବିଭବ ।
କନ୍ତୁ ଶବରେଶ ସାମର୍ଥ୍ୟ --ଲକ୍ଷ୍ମୀ ଶ୍ରୀବିଭୂପାଦେ,
ତଥାପି ଭଣିଲା ସ୍ୱଦୋଷ ନାହିଁ ଘୋର ବିଷାଦେ ।
"ଯାର ମଦେ ହୋଇ ଉନ୍ମତ୍ତ ଯାତନାପୁଣ ନୃପ ,
ଉଡ଼ାଏ ବିପୁଳପକ୍ଷରି ଯଥା ଅସାର, ସ୍ତୂପ ।
ପତଙ୍ଗ ପରାଏ ନଗଣି ପର ପ୍ରତାପ - ଦୀପ ,
ମତ୍ତଭ୍ରମେ ପଡ଼ ସ୍ଫୋଟନ୍ତୁ ଧର୍ମଖଡ୍ଗ-ସର୍ପ ।
ପରସେନାବିଜୟୀ କରେଁ ନୃପଭୁଜଦଣ୍ଡରେ ,
ଅମର ଆନନ୍ଦ ଆସଇ ଅଦ୍ଭୁତ ହୃଦରେ ।
ସନ୍ଦରୀ ନାରୀଜନର - ସଙ୍ଗେ ଅନୁରକ୍ତ ,
ହେବାରୁ ହସନ୍ତ ସାହସ ଦାର୍ଢ୍ୟ ବୀରତ୍ୱ ବୃତ୍ତ ।
ଅଧିସାରଶୀଳା ସେବନ୍ତି - ଲକ୍ଷ୍ମୀ ରଣଅଙ୍ଗାରେ ।
ଜାଣି ପ୍ରିୟପ୍ରାଣ ପ୍ରବେଶ- କରେ ବିପକ୍ଷଦ୍ୱାରେ ,
ଏତବ ପ୍ରାର୍ଥନା ଯଯାତି । ମୋର ବଂଶବର୍ତ୍ତିକା ।
ଦାରୁବ୍ରହ୍ମଦେବୀ ସକାଶେ ପ୍ରକାଶିବେ ଅହିଂସା ।
ସେବାମାତ୍ର ମାଗିସନ୍ଧିରେ ମହାଶିବ ନୃପତି ।
ମରଧାମେ ବଳେ ଅମର ନାମ ଦସ୍ୟୁ ଭୂପତି ,

ଲଳିତଗମନା କରେଣୁ- ପୃଷ୍ଠେ ହେମ ଅମାରି-
ଆସନନ୍ତି ଲେ କେଶରୀ ଘେନି ଜୟଶ୍ରୀନାରୀ,
ରଥେ ଦାରୁବ୍ରହ୍ମ ବସାଇ ଶଙ୍ଖନିନାଦ ସଙ୍ଗେ,
ଚଳିଲା ଉତ୍କଳ ବାହିନୀ ଭାସି ମୋଦ ତରଙ୍ଗେ ।



ବଙ୍ଗଳାଶ୍ରୀ

## ୮ମ ସର୍ଗ ।

ଶୁଭ୍ର ବସନ୍ତର - କୋଳୁ ଉଠୁଥିଲା
ବାରୁଣ ନଦୀପଶ୍ଚରୁ ।
ଜ୍ୱଳିଲେ ସୌଧିଗେ ଗିରି ବନ ବକ୍ଷେ
ଦାବ ହୋଇ ହୁରୁହୁରୁ ।
ଅନନ୍ତ ଜାଳମା ପରିହରି ଗିରି
ଦବଭସ୍ମ ମାଖି ଅଙ୍ଗେ ।
ପ୍ରକାଶିଲେ ପାଣ୍ଡୁ- ରୁଚି ଚଉଦିଗେ
ଭରନ୍ତର ଦାବାନଳେ ।
ତାଡ଼ି ଗନ୍ଧଧର ଚୈତ୍ର ହେଲା ଖର
ଉଦାସ ଦକ୍ଷ ପ୍ରତାପେ ।
ଥାଉ ଅନ୍ୟକଥା ଫିଟିଲେ ପାଷାଣ
ତପନ ଯନ୍ତ୍ରେ ଅତପେ ।
ତପନ୍ତ ଅନଳ - ସନ୍ତପ୍ତ ସାଗର
ବକ୍ଷେ ଜଳଭସ୍ମର ।
କଲେ ଉଦଣ୍ଡରେ ଗର୍ଜନ ତୁଷାର -
ହିମଗିରି-ନଦୀଧାର ।

ପଥିକ ପିପାସା — ନିବାରଣ ପାଇଁ,
ପଥପାର୍ଶ୍ୱେ ରଚି ପ୍ରପା,
କାଟିଲେ କାହିଁ କୂପ ପ୍ରଧାନଙ୍କ
ଧନୀ ବନ୍ଧୁ ଅନୁକମ୍ପା ।
ଏହି ଅବସରେ ଶ୍ରୀକ୍ଷେତ୍ରେ ପ୍ରବେଶି
ଗାଲନାମେ ବୌଦ୍ଧଭୂପ,
ମନ୍ଦିରକୁ ମଠେ ପରିଣତ କରି
କରାଇଲେ ଅନୁସ୍ୟୂତ ।
"ଭାରତ ବର୍ଷ୍ୟାତ ବୌଦ୍ଧକ୍ଷେତ୍ର କର୍ତ୍ତା
ବସ୍ତୁକ୍ଷେତ୍ରେ ପରିଣତ ।
ବୋଲି କହେଥିଲେ ଉତ୍କଳ ବାହିନୀ
ବଳଦର୍ପେ ହୋଇ ମତ୍ତ ।
ଏବେଳେ ଦକ୍ଷିଣା — ପଥ ନରପତି
କୁମାରିଲ—ମନ୍ତ୍ରଦୀକ୍ଷା,
ଯେଉଁ କରୁଥିଲେ ବୌଦ୍ଧ ଦୂର କଣ୍ଠେ
ନିରନ୍ତରେ ଅସ୍ତ୍ରଶିକ୍ଷା ।
ଧାତୁଚୀର ସୌଧ — ନିବାରି ସୁଧନ୍ୱା
ସ୍ୱଧର୍ମ ଉଦ୍ଧାର ପାଇଁ ।
ଅଣିଲେ ସ୍ୱପକ୍ଷେ ଶଙ୍କର ସ୍ୱାମିଙ୍କି
ମାଳବଜମଲା ସାଇଁ !
ଚନ୍ଦନ ପାଦପ — ବନ୍ଦିଲା ଚୈତ୍ୟ
ପାର୍ଶ୍ୱେ ହେଲେ ଅଗ୍ରସର ।
ଶ୍ରୀଚଣ୍ଡ ଚରଣ — ଚରୁପାର୍ଶ୍ୱେ ତ୍ରାସ
ହୋଇଥିବଇ ତରଙ୍ଗର ।

ରତ୍ନାକରୁ ଯେହ୍ନେ　　　କରରୂପେ ଲଭି
ହରନ୍ତି ମୁକ୍ତାନିକର !
ସେ କଳିଙ୍ଗପତି　　　ହେଲେ ଜୟାକାଂକ୍ଷୀ,
ଚେଲେ ରଣେ ଛତ୍ରପର ।
ପଲ୍ଲବ ଭୂପତି　　—　　ଧ୍ୱଂସ ପାଣ୍ଡ୍ୟପକ୍ଷ
ଚାଳୁକ୍ୟେ ଲଂଘି ନର୍ମ୍ମଦା ।
ଧାଇଲେ ଯାହାଙ୍କ　　　ପ୍ରତାପେ କମ୍ପିତ
ଦକ୍ଷିଣାପଥ ସର୍ବଦା ।
ଦକ୍ଷିଣା ପଥର　　　ଚତୁରଙ୍ଗ ଚମୂ
ସମବେତ ଶୁଣି କ୍ରୋଧେ ।
ଆର୍ଯ୍ୟାବର୍ତ୍ତ ଭୂମି　　　ଆମନ୍ତ୍ରଣ କଲେ ।
ଧର୍ମ ଲାଗି ବୌଦ୍ଧ ଯୋଧେ ।
ବନ୍ଧୁ ଆର୍ଯ୍ୟାବର୍ତ୍ତୁ　　　ଜାଣ ଅସୂଥିଲା
ବଉଧପ୍ରଦୀପ ଜ୍ୟୋତି ।
ଦାକ୍ଷିଣାତ୍ୟ ଉଦ୍ଧେ　　　ଉତ୍କଳ ଗୌରବେ
ମଗଧାଦ୍ଧ ମୁଣ୍ଡ ତୋଳି ।
ଅବହାପ୍ତେ ଗାଲ୍　　　ଉଡାଇଲେ ବଟେ
ଧବଳ ଶାଲୁପତାକା ।
ଯାହାର ଦର୍ଶନେ　　　ମଉନେ ରହିଲା
ବିପକ୍ଷ ଶିବିର ଢକା ।
ରକ୍ଷିବ୍ରତ ରୂପେ　　　ପିତାମ୍ବର ଧାରୀ
ଭିକ୍ଷୁବୃନ୍ଦ ସେନା ଗାଲ ,
ଉଦ୍‌ଘାଟ ହେଲେ　　　ଯଯାତି କୀର୍ତ୍ତିରେ
କରପତ୍ରେ ମଣ୍ଡିଥିଲ ।

ଗାଲଙ୍କର ଲାଗି ବସିଥିଲା ପୂର୍ବେ
ଦାକ୍ଷିଣାତ୍ୟ ରାଜସଭା ।
ମଣ୍ଡୁଥିଲା ଯହିଁ ସଭାପତି ପଦ
ଶଙ୍କରଙ୍କ ବାକ୍ୟପ୍ରଭା ।
ସେ ସଭାରେ ଗାଲ୍ ଦେଲେ ପରିଚୟ
ଫୁଲାଇ କପୋଳ ବେନି ।
"ଆସିଅଛୁ ଅମ୍ଭେ ବୌଦ୍ଧରାଜ୍ୟ ପ୍ରଜା-
ପ୍ରତିନିଧି ଭାବ ଘେନି ।
ସୁବର୍ଣ୍ଣକେଶେ ପାଳୁଥିଲେ ଯେହୁ
ବ୍ରାହ୍ମଣ୍ୟ ବଉଦ୍ଧ ପ୍ରଜା ।
ଦେଶ ଦେଶାନ୍ତରେ ଉଡ଼ାଇଲେ ଯେଉଁ
ଭାରତ ବିଜୟଧ୍ୱଜା ।
ରାଜସୂୟ ଯଜ୍ଞ ସରଜିଲେ ଯେହୁ,
ଭାରତେ ସାମ୍ରାଜ୍ୟପଦ ।
ହଟାଇଲେ ପୁଣି ଭାରତ ଧାମରୁ
ଅନ୍ତର ବିବାଦଗଦ ।
ସେ ନୃପତିକୁଳ ଅର୍ଜିଲ କୀର୍ତ୍ତି
ଦାକ୍ଷିଣାତ୍ୟ ଅଧ୍ୟାତ୍ମରେ ।
ବୌଦ୍ଧ ପତନରେ ବୈଷ୍ଣବ ପ୍ରଭବ
ବସିବେ କେଉଁ ବଳରେ ।
କହିବ କି କେହେ ଭାରତ ଧାମରୁ
ବୌଦ୍ଧନାମ ତିରୋହିତ ।
ଯାର ଛିନା ଲେଖେ କୁଶନ ଅଙ୍କାର
ଧରିଲ ଅନ୍ତର୍ହିତ ।

ଭାରତର ଧୂଳି  ପଡ଼ିଅଛି ଭରିରେ
ବ୍ରାହ୍ମଣ୍ୟ ସ୍ୱାର୍ଥ ଶୃଙ୍ଖଳ ।
ଜାଳିବାକୁ ପୁଣି  ରାଜସୂୟ ଯଜ୍ଞେ
ରାଜକୁଳ ହିଂସାନଳ ।
ଅସ୍ପୃଶ୍ୟ ସଲିଲ  ଜାତିଭେଦ ବହ୍ନି
ଦେବାର୍ଚ୍ଚନା ବାଲକ୍ରୀଡା ,
ଛାଡ଼ିଲେ ମାନବ — ମନେ ଅଣିଯାଏ
ଲଜ୍ଜ୍ୟାବତୀ ଲଜ୍ଜାବ୍ରୀଡା ।"
ବୋଲି ଏହା ଗାଇ  ନରଜନ୍ମେ ଉଠି
ବେଦାନ୍ତ ବନକେଶରୀ ।
ଜଳି ଜ୍ଞାନଦମ୍ଭ  କୁମାରିଲ ଭଟ୍ଟ-
ପଟ୍ଟଶିଷ୍ୟ ଦଣ୍ଡଧାରୀ ।
ଭଣିଲେ "ଜଧର୍ମ୍ମ  ଛିଣିଲେ ଅନାର୍ଯ୍ୟ
ଅଦ୍ୱସଭ୍ୟ ଆର୍ଯ୍ୟଜାତି ।
ଜିଧର୍ମ୍ମ ହାରରେ  ପ୍ରଜ୍ୱଳିଲା ଯଗେ
ଅଜ୍ଞାନ ତମିସ୍ରା ରାତି ।
ଜିଧର୍ମ୍ମ ଏବର୍ଷେ  ଅଙ୍କିବିଲା ଅଗ୍ରେ
ମୁକ୍ତମନେ ଅସ୍ପୃଶ୍ୟା ।
ଯାପାଇଁ ସମସ୍ତ  ବସୁଧା ଗୁନ୍ଥୁଛୁ
ପ୍ରେମସୂତ୍ର ପୁଷ୍ପମାଳ୍ୟ ।
ଯେଉଁକାଳେ ସାମ୍ରାଜ୍ୟ — କମଳା ମଣ୍ଡିଲା
ଅଯୋଧ୍ୟା ହସ୍ତିନା କର୍ଣ୍ଣ ;
ରାଜପୁତ୍ର ଜନା  ଥିଲେ ଯେଉଁକାଳେ
ବୁଦ୍ଧ ପ୍ରତିପାଦ୍ୟ ଧର୍ମ୍ମ ।

ଯୁଗ ଯୁଗାନ୍ତର ଗର୍ଜି ଆସୁଥିଲା
ଝୁରନ୍ତେ ବ୍ରାହ୍ମଣ୍ୟଧର୍ମ !
ପିଇଥିଲା ଦିନେ ପଞ୍ଚନଦ ପାଣି
ବର୍ଷାନ୍ତର ବାସୀ ଜନ ।
ବିଯୋଗେ ମଗଧେ ଶିଶୁନାଗ ବଂଶ
ସେବିଲା ଅଲସ୍ୟଧର୍ମ
ଖାଇବାର ପାଶ ଲଙ୍ଘିଲେ ବିଦେଶୀ
ହୂଦ୍ରେକଲେ କ୍ଷାତ୍ରକର୍ମ ।
ନବଧର୍ମଯୁଗେ ନବତୃଥା ମନ୍ତେ
ଜାଗିଲେକ ଶେଷ ମୌର୍ଯ୍ୟ ।
ଲଭିଲେ ସାମ୍ରାଜ୍ୟ -- ଲକ୍ଷ୍ମୀ ପଦ ବନ୍ଦେ
ଜନ୍ମାରମ୍ଭ ସଦ୍ୟ ଶୌର୍ଯ୍ୟ ।
ସେଥିଯୋଗୁ ବିନା ଗ୍ରୀକପଦକ୍ଷେ ଅଧି
ଅସଭ୍ୟ ସିଥୀଯୂଜାତି ,
ଅର୍ଯ୍ୟକୁଲ ବଧୂ ସମ୍ରାଜ୍ୟ ଭମଣ୍ଡା
ହଇଲେ ଅହୋ ବଶ୍ୟାତି ?
ଭାରତ ସାମ୍ରାଜ୍ୟ-- ରମାପାଇଁ କେତେ
ଖରେ ମଥା ଦେଲେ ଆହା ।
କେତେ ରଣେ ମାତି ହରାଇଲେ କାରେ
ସ୍ୱର୍ଣ୍ଣଶିରୀ ଧରାନାହା ।
ଯଶୋଧର୍ମ୍ମ ଦେବ ମାଲବ ଗଗନେ
ସ୍ୱାଗ୍ୟେ ଦେଖାଇଲେ ଦ୍ରୁବ ।
ଦୀର୍ଘକାଳ ଯେହୁ ଶଙ୍କରା ସହର
ହେଲ ଅର୍ଦ୍ଧଅଚପଳ ।

ଯା'ର ସ୍ପୃହା ସେବି ନବ ରତ୍ନ କବି
ବଜାଇ ଅମର ବୀଣା ।
ଲୁଣ୍ଠିଲେ ସର୍ବସ୍ୱ ଭାରତୀ ଭଣ୍ଡାରୁ
ଭାରତୀ ସେଦିନୁ ହୀନା ।
ଛିନ୍ନ ଭିନ୍ନ ହେଲ ଏବେ ସେ ସାମ୍ରାଜ୍ୟ
ବଉଦ୍ଧ ବର୍ଜ୍ଜନ ବଶେ ;
ତେଣୁ ଦାକ୍ଷିଣାତ୍ୟ ପଣ କରିଅଛି
ବୁଦ୍ଧ ଧର୍ମ-ସଙ୍ଘ-ଧ୍ୱଂସେ ।
ବାସ୍ତବ କଳଙ୍କେ ଭ୍ରାତୃଭେଦବଶ
ଦିଅଇଲେ ଭାଷାଧର୍ମେ,
ହରାଇଲେ ଜ୍ଞାନ, ଧର୍ମ,ମାନ,ଅର୍ଥ
ଶତ୍ରୁଙ୍କର କ୍ରୂରକର୍ମେ ।
ଯୁକ୍ତି ବ୍ରହ୍ମାଅସ୍ତ୍ରେ ଛଡ଼ିପାର ଯେବେ
ଥାଉ ତୁମ୍ଭ ଧର୍ମଚିହ୍ନ ।
ନୋହିଲେ ସହସା ହିନ୍ଦୁକ୍ଷେତ୍ର ଛାଡ଼-
ଯିବା ହାତେ ଧରି ଯନ୍ତ୍ର ।" ।
ବିପ୍ଲବଣ ବିଧି ଶଙ୍କରଙ୍କ ବାକ୍ୟ
ଗାଇ ମନେ ମନେ ଗୁଣି ,
କହିଲେ ଏ"ଶେଷ ଥିଏ ହିନ୍ଦୁଙ୍କର
ପ୍ରମାଣ ହଉଅଛି ମୁହିଁ ।
ଜାଣିଲେ ଅଚିରେ- ଲଭିବେ କଉଚ୍ଛେ
ଧର୍ମୋଦ୍ଧାର ହାରକଣା ।
ଧରମ ପାଇଁ କି ଦେହୁଏ ବଧିବେ
ବାଳ,ବୃଦ୍ଧ,ବାଳା,ସିନା ।

ଦ୍ରାକ୍ଷାରାମେ ଶାନ୍ତ — କୋଳେ ଖେଳୁଥିଲା
ଉତ୍କଳର ବଉଧଧର୍ମ ।
ଧର୍ମଲାଗି କେବେ ନଥିଲା ଭାରତେ
ଯୁଦ୍ଧେ ହଣାହଣି, ମର୍ମ ”
ଏରୂପେ କଠୋର— କଥାନାନ୍ତେ ଭୂପେ
ଉଠି ସ୍ୱର୍ଣ୍ଣସିଂହାସନୁ ।
ଅନୁମୋଦ କଲେ— ତୁମାଣ ପ୍ରସ୍ତାବ
ଛଡାଇ ବିବାଦ ମନୁଂ ।
ବକ୍ଷୀରାଣି ମଧ୍ୟେ — ପ୍ରୋଥିତ ଥିଲା ଯେ
ଦୃଷଦ୍ରେଖଣୀ କୁଣ୍ଡେ ।
ସୂଚି ଚତୁର୍ଦ୍ଦିଗେ ଦେଲା ସେ ନବୋଲି
ମୂକସାକ୍ଷୀ ଯଥା ତୁଣ୍ଡେ ।
ଗାଙ୍ଗଅ ଉପାଧି ଲଭି ଦୁଃଖେ ଚାଲି
ନୀଳାଚଳ ଦେଲେ ଛାଡି ।
ଜଗଇଷ୍ଟ ଘେନ ଅସିଲେ ହୃଦଏ
ମହୋଦଧି ପ୍ରାଏ ମାଡ ।
ଜଳଗଜ, ସିନ୍ଧୁ - ଘୋଟକ, ସମାନ
ଗଜ ଘୋଟକଙ୍କ ଭଡ ।
ମନ୍ଦର ପରାଏ ଗର୍ଜିଲା ହୃଦରେ
ଜୟଘୋଷ ଗଡଗଡ ।
ବଟେ ବଢାଇଲେ ସ୍ୱର୍ଣ୍ଣିର ମଣ୍ଡପେ
ମନ୍ଦର ପ୍ରତିଷ୍ଠା ଲାଗି ।
ପଶିଲେ ଦ୍ୱିଜାତ କନୌଜୁ ଯଦାଜ୍ଞ
ବ୍ରହ୍ମକୁ ଭୂପେ ମାଗି ।

ପ୍ରାସାଦ ପ୍ରତିଷ୍ଠା — ପ୍ରସ୍ତରକ ପଦେ
ଶଙ୍କର ବସିଲେ ନଢେ ।
ସ୍ୱାହାସ୍ୱର ସଙ୍ଗେ ନହିଲେ ଅହୁଛି
କାନ୍ୟକୁବ୍ଜବାସୀ ଦ୍ୱିଜେ ।
ହୋମଧୂମ-ବାସ ସେବି ନରପତି
ଶାନ୍ତରସେ ହେଲେସିକ୍ତ ।
ପୂର୍ଣ୍ଣାହୁତି ପରେ ହରଲେ ବ୍ରାହ୍ମଣେ
ପ୍ରାଣନେ ମାର୍ଜିଲେ ଚିତ୍ତ ।
ଷଷ୍ଠିହସ୍ତ ମିତ ଉଡ଼ାଇ କେତନ
ନୀଳଚକ୍ରେ ପତପତେ ।
ଭ୍ରାତୃଭକ୍ତିସଙ୍ଗେ ଅଣାଇ ଶ୍ରୀପଞ୍ଚ
ଗୁଣ୍ଡିଚା ଅନାରୁ ରଥେ ।
ବଢେ କରାଇଲେ ରତ୍ନ ସିଂହାସନେ
ଧର୍ମଚକ୍ର ପରିବର୍ତ୍ତେ ।

ହରଟି ଭୈରବୀ- ଚକ୍ର ଶ୍ରୀଶଙ୍କର
କଲ୍ୟାପ ଚକ୍ରମଣ୍ଡଳେ ।
ଅନୁକୂଳ ପୂତ- ଚକ୍ରେ ଛିନ୍ନ ହେଲ
ଧର୍ମଚକ୍ର ବୁଦ୍ଧଙ୍କର ।
ପରସା ସ୍ୱଧର୍ମ - ଚେତ ଭାଲ ହେଲେ
ଶ୍ରୀପଥ ସେବା ଦଂକର ।
ଭୂପଙ୍କ ସଙ୍ଗେ ଛାଡ଼ଙ୍କ ବ୍ରାହ୍ମଣେ
ଚେଷ୍ଟ ବୌଦ୍ଧ ଧର୍ମଗୁରୁ,
ଭୈରବୀ ଚକ୍ରର ବିଧ୍ୱବସ୍ତୁ ହେଲେ
ନୀଳାଚଳେ ସୂପକାର ।

ଦାକ୍ଷିଣାତ୍ୟ ଭୂପେ କାନ୍ୟକୁବ୍ଜ ବିପ୍ରେ
ବସିଲେ ମଣ୍ଡଳାକାରେ ।
ବୁଝିଲେ କୈବଲ୍ୟ, କୈବଲ୍ୟ ମାନସେ
ଜାତିଭେଦ ନିର୍ବିଚାରେ ।
ଏରୂପେ ଜାଲାଦି- ଜନକେ ପ୍ରଥମେ
ହିନ୍ଦୁବୌଦ୍ଧ ସମନ୍ୱୟ,
ରଥ ବରତଲେ ଭାରତେ ଯଯାତି
ଆର୍ଯ୍ୟଧର୍ମ୍ମ ଅଭ୍ୟୁଦୟ ।
ଲଭିଲ ବଲସ୍ୱ ବୌଦ୍ଧ ଭାବଭକୁ
ହର ହିନ୍ଦୁ କଦାଚାର ।
ଅମର ଧେବନୁ ଭାରତେ ଶଙ୍କର
ସ୍ୱଧର୍ମେ ନବ ସଞ୍ଚାର ।
ଦାକ୍ଷିଣାତ୍ୟ ଭୂପେ ଗଲେ ଯଯାତିଙ୍କି
ଇନ୍ଦ୍ରଦ୍ୟୁମ୍ନ ପଦେ ମଣ୍ଡି ।
ବହିଲେ ଶ୍ରୀକ୍ଷେତ୍ରେ ଗର୍ମ୍ମିସବୃତ
ପାଳନ ପାଇ ଶ୍ରୀଦଣ୍ଡୀ ।
ଶଙ୍କରଙ୍କ ପାଇଁ ହେଲ ସେପପାର୍ଶ୍ୱେ
ଆଶ୍ରମ ଭୋଗବର୍ଦ୍ଧନ ।
ଯେ ବୈଷ୍ଣବ ଭାପେ ଅନୁରତ ଅଁହ
ଧାଗର ସେ ବଳତେ ମଗ୍ନ ।
ଦଶ ସହସ୍ରକୁ ଅଧିକ ବିଲାତ
ଶଙ୍କରଙ୍କ ଉପବଣ୍ଟେ,
ଦେବର ଦବାନ୍ତୁ ରକ୍ଷିଲେ ଯଯାତ
ଭୋଗ ବର୍ଦ୍ଧନର ମଠେ ।

ତମାଳର ମାଳ — ପଶ୍ଚାଏ ଶ୍ୟାମଳ
ନଭେ ଘୋଟି ମେଘମାଳ,
ଶୁଣିଲା ଦାରୁଣ ଜଳଧର ଡାକ
ଲୁଚି ରବି ରଶ୍ମିଜାଳ ।
ଘନଦେହେ ଶତ — କ୍ରତୁ ଶରାସନ
ରତ୍ନାକର - ରତ୍ନକଣା ।
ଅଙ୍କର ଛଟା ନୁହେ ଉଦ୍ଭାସିତ
ବହ୍ନି ବଧି ବନ୍ଦ୍ୟମନା ।
କଷଟି ପ୍ରସ୍ତର - ସଦୃଶ ପୟୋଦେ
କ୍ଷଣପ୍ରଭା ଗଲେ ଭେଦି ।
କନକ ଉଦିତ - ପାବକ ସ୍ଫୁଲିଙ୍ଗ
ଭଙ୍ଗି ଯାଏ ମନେ ପଡ଼ି ।
କେବେ ଘନ ଦେହେ ଦିଶିଯାଏ ଯେବେ
କ୍ଷଣପ୍ରଭା ଶକ୍ରଧନୁ ,
ପର୍ବତ ଶିଖରେ ନାଚନ୍ତି ଶିଖଣ୍ଡୀ
ଫୁଲି ଛତ୍ରେ ଛାଡ଼ି ତନୁ ।
ନବ ଜଳଦର ସୁନାଶୀର - ଧନୁ
ତଳେ ଉଡ଼ି ବକାବଳୀ ,
ମାନସ ପ୍ରବାସୀ ରାଜହଂସ ପନ୍ତି
ଶୋଭେ ପିତ ଶିଞ୍ଜୀବଦ୍ଧ ।
ପୟୋଦ ବୃନ୍ଦରୁ ଝଡ଼ି ଜଳ ବିନ୍ଦୁ
ପଡ଼େ ପୌରବରେ ଝଲି ,
ଉତ୍ତପ୍ତ ଧରାପନୁ ଶୀତଳ ଅବଗ୍ୟ
ଆଣିଲ ସାତ୍ୱିକ ଭାବ ।

ତୃଣ-ଗୁଳ୍ମ-ଦ୍ରୁମ- ଶ୍ୟାମାଙ୍ଗୀ ଧରଣୀ
ବହୁ ଇନ୍ଦ୍ରଗୋପ ତନୁ,
ସାଜିଲା ସ୍ୱଦେହେ ସଜ୍ଜ, ସୁନ୍ଦର
ପୁଲୋମଜାପତି ଧନୁ।
ନୀଳୋତ୍ପଳ ଭଙ୍ଗି- ନିର୍ମଳ ପୟୋଦ-
ବକ୍ଷୁ ଜନ୍ମି ଜଳରାଶି,
କଳ କଳ ନାଦି ମିଶିଲା ସାଗରେ
କଳୁଷ ଶରୀର ନାଶି।
ଗମ୍ଭୀର-ନିର୍ଘୋଷ ଘନେ ନିରନ୍ତର
ଶୁଣି ହେଲା ଘୋଷଯାତ୍ରା।
ଯେ ଯାତ୍ରା ଉତ୍କଳେ ଚଳୁଅଛି ଅଜ
ବଡ଼ଙ୍କ ପରବ ମାତ୍ରା।
ଏହାପରେ କ୍ରମେ ସମାଜ ସଂସ୍ଥାରେ
ଆର୍ଯ୍ୟପଦେ ଶଙ୍କର,
ବସାଇ ଯଯାତି ବିରଜାମଣ୍ଡଳେ
ଦହିଲେ ଯଜ୍ଞାନଳର।
ଅଶ୍ୱ ଦିନା ଅଶ୍ୱ- ମେଧ ଯଜ୍ଞ କଲେ
କଲି ଅନୁକ୍ରାନ୍ତ ବଳ,
ଦଶ ଅଶ୍ୱମେଧ- ଧୂମେ ଉଦ୍ଧେଶ୍ୱଲେ
ଉତ୍କଳ ମଶକ କଲା।
ଯଜ୍ଞାନ୍ତେ ଅସଂଖ୍ୟ- ଶାସନ ପ୍ରଦାନ-
ଜଳସିକ୍ତ ଯଜ୍ଞସ୍ଥଳୀ,
ବର୍ଦ୍ଧିତ ହେଲା ସମ୍ଭୋଗିତ ଦସ୍ତ
ପଦାଙ୍କେ ପଦାଙ୍କ ପଣ୍ଡ।

ଉତ୍କଳଙ୍କ ଗୟା - ଯୀରେ ବସିଗଲ
ଅସଂଖ୍ୟ ଦ୍ୱିଜବସତି,
ଶାସ୍ତ୍ର ଗୋଷ୍ଠୀରବେ ଯହିଁ ମୁଖରିତ
ବାତାୟନ ଦ୍ୱାରପଂକ୍ତି ।
ଯହିଁ ସାୟଂ ପ୍ରାତେ ହୁତଭୁକ ମୁଖେ
ଢାଳ ଅଗ୍ନିହୋତ୍ରୀ ଘୃତ ,
ଶୁଦ୍ଧ ଦେହ ବାଳି ହରନ୍ତେ କଲ୍ମଷ
ହୋମଧୂମେ କରୁ ପୂତ ।
ଯହିଁ ଯଜ୍ଞ - ଯୂପ — ଆଳାନ ସ୍ୱରୂପ
ମଣି ଡରେ କଳଦ୍ୱିପ ,
ସରଳତା ଯହିଁ ପ୍ରକାଶେ ଲାଙ୍ଗଳୀ
ବହୁ ଖଡ୍ଗକୋଷ ସିପ ।
ବ୍ରହ୍ମଚର୍ଯ୍ୟ ଦୀକ୍ଷା ଗୃହ ପ୍ରାଙ୍ଗଣରେ
ସାଙ୍ଗ କଲେ ମାଣବକେ ,
ଦହରଲେ ଯହିଁ ତପୋବନ ବତ
ନାରିକେଳ କୁଞ୍ଜକକ୍ଷେ ।
ପୁଣି ପୂର୍ଣ୍ଣତୋୟା — ଯୀରେ ଦରଶିଲେ
ଯଯାତି ସ୍ୱନାମେ ପୁର ,
ବହଇ ଯା ତଳ ବୈତରଣୀ ସଦା
ପ୍ରସାରି ଭବ ମୁକୁର ।
କମଳିନୀକାନ୍ତ — କର ଦିଗନ୍ତରୁ
ଲଜ୍ଜା ମୁଖ ଯାଏ ଯହିଁ ,
ଜାଦ୍ରଗୟା - ତୀର — ସ୍ନାନେ କ୍ଷଣି ତାପ
ଶୀତଳତା ଥାଏ ବହୁ ।

ସମ୍ମୁଖ ପାହାଡ, ନର ଲଲାଟ ଲୁଣ୍ଠେ
ଯହିଁ ଥିଲା ଚନ୍ଦ୍ର ଭାସ୍କ ,
ଫୁଲୁଥିଲା ଯତ— ପାର୍ଶ୍ୱେ ନଗ୍ରୀ ଳର
ଶାସ୍ତ୍ରତର୍କେ ରମ୍ୟନାଦ୍ୟ ।
ମନ୍ଦର ମନ୍ଦିର — ଦୁଗ୍ଧାବ୍ଧି ନିର୍ଗତ
ସ୍ନିଗ୍ଧ ନବନୀତାବଳ ,
କାବ୍ୟମାଳା ପୁଣି ମଧୁରତା ପୂର୍ଣ୍ଣ
ମୃଦ୍ଵିକା ରସକୁ ବଳ ।
ଯହିଁ ଉପବନ ଅନ୍ତରଳଭାବେ
ରହି,ଉଦ୍ଭ ରଶ୍ମିଜାଲ ,
ଉତ୍ସେଧ ଉଚ୍ଚଳ ନାନା ପୁଷ୍ପେ ସଦା
ଭ୍ରମନ୍ତ୍ର ଭ୍ରମର ମାଳ ।
ଅସଙ୍ଖ୍ୟ ମନ୍ଦିର — ବାପୀ ପାସ୍ତବତ
ସ୍ୱର ଯହିଁ ପୌରକନ୍ୟା ,
ଅନୂକୂଳୁ ଥିଲେ ନରଦୋଷେ ଯାହା
ଧୋଉ ଅଛୁ ଅଦ୍ୟକନ୍ୟା ।
ବୈତରଣୀ ସ୍ରୋତେ ଯହିଁ ଧାତପୋତେ
ପୂତ କର କଳେବର ,
ଉତ୍କଳ ଭବନେ ଉର୍ବୀପତି ସେବ -
ଲଗିଥିଲେ ତତ୍ପର ।
ଅସ୍ୱସ୍ଥାନ୍ତୁ ଦେଖ - ଦେବରୂପେ ତହିଁ
ଦରଜା ଯନ୍ତ୍ରବଣ୍ଟ ,
ବସାଇ ଶାପିଲେ ବସଇ ଧର୍ମଙ୍କୁ
ଶାନ୍ତରସେ ଅବଗାହ ।

ଖଣ୍ଡାରେ ଅବଶ୍ୟ  କପାଟ ଖୁଲନ୍ତେ
ନଗର ଭିତରକୁ ,
ଷଣ୍ଡାପଣ ତର  ଯାଇ କରୁଥିଲେ
ସବାକ୍ଷ, ମାନବକୁ ।
ମାନଙ୍କ ଦୁର୍ନୀତି  କାହିଁ ବା ସେକାଳେ
ନଥିଲା ରୀତିନୀତି ।
ଯଥାଯୋଗ୍ୟ ଜଳେ  ଯଥାକାଳେ ଘନ
ସିକ୍ତ କରୁଥିଲା କ୍ଷିତି ।
ଶ୍ରମ ହରିବାକୁ  ବହୁଥିଲା ସମୀର
ବପୁ ତାପିବାକୁ ରବି ,
ଫଳଭରେ ନତ,  ପାଦପ ଦେବାକୁ
ପକ୍ୱଫଳ ପାଣ୍ଡୁଛବି ।
ନିରନ୍ତର ପୁରେ –  ପୁରେ ଉଡୁଥିଲା
ଅନନ୍ତ ଉତ୍ସବ ଧ୍ୱଜ ,
ତୂର୍ଯ୍ୟ ପ୍ରଭୃତି ଧ୍ୱନି –  ଛୁଟିଲେ ଗର୍ଜୁଥିଲେ
ଚତୁର୍ଦ୍ଦିଗେ ଦିଗଗଜ ।
ଧର୍ମ ଉତ୍ତୋଳନ  ସୁଶାସ୍ତ୍ର ଶାସନ–
ସଦାଚାର ଭରତଧାମେ,
ଯଦୁବଂଶ ବଶେ  ରଖିଗଲେ ଅଖ୍ୟା
ଯଯାତି ଦଧୀଚିନାମେ ।
ଦନ୍ତ୍ର, ପୁତ୍ର ପୌତ୍ର  ଦୀର୍ଘବର ଯପ —
ବାର ପରେ ପିଣ୍ଡ ମାର ,
ଦୁର୍ଭର ଯାଚିଲେ  ଯଯାତିଙ୍କ ଭ୍ରାତା,
ଭିଲକୁ ଦତ୍ତାତ୍ରେୟର ।

ଖାଡ଼ିଲେ ଉତ୍କଳ ପୁତ୍ର କ୍ରମେ ପୁଣ
ଅଭିମନ୍ୟୁ ରଣୀବର ,
ଉଦ୍ୟୋତ କେଶରୀ — ସମୟେ ହଉଲେ
ରାଜଶିରୀ ଗଙ୍ଗେଶ୍ୱର ।
ଲଲନା ଲଲାମ — ସତୀ ଶିରୋମଣି
କୋଲାବତୀ ମାତୃ ନାମେ,
ଉତ୍ସର୍ଗି ମନ୍ଦିର ବ୍ରହ୍ମେଶ୍ୱର * ପୁଣି
ରାଜରାଣୀ ନାଚଧାମେ ,
ଶୋଭାଉଥିଲେ ଯା କୀର୍ତ୍ତିସ୍ତମ୍ଭ ବେଢ
ରହିଗଲା ଏକଲାଗେ ।
ରଚନ୍ତୁ ଯା ଅଙ୍ଗେ ଭାସ୍କର କୌଶଳ ,
ବାଧ୍ୟ ହୋଇ ଧ୍ୱଂସାଙ୍ଗେ ।
ଅନଙ୍ଗ ରଙ୍ଗର ନର ନାରୀ ମୂର୍ତ୍ତି
ଦେଖିଲେ ଏଭାବ ଆସେ ,
ସହସା କେଶରୀ — ଅଶୁଭ ସମ୍ବାଦେ
ସ୍ତମ୍ଭୀଭୂତ ହବା ତ୍ରାସେ ।
ଉତ୍କଳ ଭାସ୍କର କେଶରୀ କୁଳର
ଭାସ୍କର କୀର୍ତ୍ତି ନିକର ,
ଉଦ୍ୟୋତ କେଶରୀ — ଖାନ୍ତ ଦନା ଯହା
କଷ୍ଟଲ ଭାଲ ଢଂକର ।
ଏକାମ୍ର କାନନେ ମନ୍ଦିର ଗଢ଼ିଲେ
ଶିଳ୍ପ ପୁଷ୍ଟ ବ୍ରହ୍ମେଶ୍ୱର ,

* କେଶରୀ ବଂଶର ଜଣନାଏ ରାଜତ୍ୱ କହୁଥିବା ଭୁବ-ନେଶ୍ୱରସ୍ଥ ବ୍ରହ୍ମେଶ୍ୱର ଶିଳାଲିପିରୁ ଉପପନ୍ନ ହୁଏ ।

ଦର୍ଶାଉଛୁ ଏବେ ଶୁଣ ଗୁଣୀ ଯେତେ
ଭଙ୍ଗୁରଙ୍ଗିଳୀ ଭବରୀ ।

---

## ୯ ମ ସର୍ଗ ।

### ରାଗ ଚକ୍ରକେଳୀ ।

ଗଙ୍ଗେଶ୍ବର ବଂଶ ଦକ୍ଷିଣା ପଥେ ,
ଅତିପରାକ୍ରମୁ ଖ୍ୟାତ ଭାରତେ ।
ସୋମବଂଶେ ଥିଲେ ଚୁବଂସୁ ରାଜା ,
ଗଙ୍ଗାଦେବଙ୍କ ବରେ ଲଭିଲେ ପ୍ରଜା ।
ସେ ବଂଶ ଗଙ୍ଗ ବା ଗାଙ୍ଗେୟ ବଂଶ ,
ବୋଲଇ ଅନ୍ଧ୍ରଙ୍କୁ କଲେ ଧ୍ୱଂସ ।
ଏବଂଶେ ଜନ୍ମି ଅନନ୍ତ ବର୍ମା ,
ଶତ୍ରୁ ଗଜବାଜି ଭୀଷଣକର୍ମା ,
କୋଲାହଳ ନାମ ଭୂପ ପ୍ରବର ,
ବସାଇଲେ କୋଲା— ହଳ ନଗର ।
ଯହିଁ କୋଲାହଳ ନୃପ ଶଙ୍କରେ ,
ପଳାଇ ପଶିଲେ ବନ ଭିତରେ ।
ଏକୋଷ୍ଠା ପୁରକୁ ଅସଂଖ୍ୟ ଗଙ୍ଗେ ,
ଯାଇ ବସିଗଲେ କାଳ ତରଙ୍ଗେ ।
ଏଥୁ ସରସ୍ତିକ - କାମେ ନୃପତି ,
ରଖି ଗଲେ ଭବେ ପଞ୍ଚ ସନ୍ତତି ।
ତ୍ରିଭୁବନଙ୍କୁ ଦେଖି ନୃପ ଅସନେ ,
ବାମାର୍ଣ୍ଣବ ଅତି ପଞ୍ଚ ଦମନେ ,

ଦୋର୍ଦ୍ଦଣ୍ଡ ଅର୍ଜ୍ଜିତ ଭୂତଳୋଥିତ –
ରମାଲଗି ହୋଇ ଉଦ୍‌ବିଗ୍ନ ଚିତ୍ତ ,
କୀର୍ତ୍ତିଲତା ପାଇ ଅସି ଲତିକା ,
ଘେନ ସୈନ୍ୟସଙ୍ଗେ ପିତୃବ୍ୟ ଭିକ୍ଷା ,
ଗଲେ ଭଙ୍ଗି ସଙ୍ଗେ ମଲୟ ଦ୍ରୁମ ,
ଖସାଇ କେରଳୀ – ଖୋଷା କୁସୁମ ।
ତାମ୍ବୁଲ ଲତିକା – ଚନ୍ଦନ ପୂଗେ ,
ଭଙ୍ଗି ଭଙ୍ଗି କାରେ ଦାକ୍ଷିଣ୍ୟ ଦୁର୍ଗେ ,
କାଳାଦିତ୍ୟ ନାମେ ଚାଲୁକ୍ୟ ପତି ,
ଜିଣି ଯୋଦ୍ଧେ ହେଲେ କଳିଙ୍ଗପତି ।
ସହ୍ୟାଦ୍ରି ସମୀପେ ସାଗର ପାର୍ଶ୍ୱେ ,
ବିଖ୍ୟାତ ଗୋକର୍ଣ୍ଣ – ସ୍ୱାମି ଆଦର୍ଶେ ,
କାର କାମାର୍ଣ୍ଣବ ମହେନ୍ଦ୍ର ଶିରେ ,
ସ୍ଥାପିଲେ ଗୋକର୍ଣ୍ଣ ସାଗର ତୀରେ ।
ବସାଇ ଜୟନ୍ତୀ — ନାମେ ନଗର ,
ଶାସିଲେ କଳିଙ୍ଗ ଗଙ୍ଗ ପ୍ରବର ।
କାମାର୍ଣ୍ଣବ ବଂଶେ କୁଳ ପ୍ରଦୀପ ,
ବଜ୍ରହସ୍ତ ହେଲେ କାଳେ ମହୀପ ।
ନାମ ଅନୁସାରେ କଳିଙ୍ଗ ଶାସି ,
ଦମ୍ଭେ ଅର୍ଜ୍ଜିଲେ ସୁଯଶ ରାଶି ।
ବଜ୍ରହସ୍ତପତ୍ନୀ ନଙ୍ଗମା ସର୍ବ୍ୱେ ,
ଜନ୍ମି ରାଜରାଜ କଳିଙ୍ଗପ୍ରଭୁ ,
ଦ୍ରମିଣ ଯୁଦ୍ଧରେ ଜୟ ଶିରୀ ,
ଲଭି ଚୋଳକନ୍ୟା ରାଜସୁନ୍ଦରୀ ,.

ମହାରାଜ ଗଙ୍ଗ –          ବ୍ରଜେନ୍ଦ୍ର ଦେୱଳ ,
ସାମ୍ରାଜ୍ୟ ଲକ୍ଷ୍ମୀ –          ଲକ୍ଷ୍ମୀ କୋଳ ,
କରୁଥିଲେ ଯେଉଁ          ପୁରୀ ବେଙ୍ଗୀରୁ ,
ଦେଲେ ପଣ୍ଡିମାଣା –          ରାଜ ଚିରିଳି ।
ଲଭିଲେ ଗାଙ୍ଗେୟ          ଦିବ୍ୟ ମନୁଜ ,
ରାଜସୁନ୍ଦରୀ ଙ୍କ          ଗର୍ଭେ ତନୁଜ ।
ସ୍ନିଗ୍ଧ ହାସ୍ୟ ସଙ୍ଗେ          ହୁଁକାର ରଙ୍ଗ ,
ଅବ୍ୟକ୍ତ ବଚନେ          ଘୋଷେ ସେ ଯୁଦ୍ଧ ,
ଫାଶୁ ଝଙ୍କାରତ          କୁମାର ଅଙ୍ଗ ,
ଉତ୍ସଙ୍ଗେ ବସାଇ          ଦୋଳିଲେ ଗଙ୍ଗ ।
ଠାରଦେଲେ ରାଣୀ          କର-କଳିକା ,
କଲେ ସୁତ ତଥା          ଆଶୀଷ ଭିକ୍ଷା ।
ଅନୁରାଗ ଭରା          ସୁତ ବଦନେ ,
ପ୍ରକାଶିଲେ ତୃପ୍ତି          ନୃପ ସଦନେ ।
ବାଲଚନ୍ଦ୍ର ବଢି          ଧାତ୍ରୀର ଶିକ୍ଷା ,
ସାଇ ପ୍ରକାଶିଲେ          ସ୍ୱାସ୍ଥ୍ୟ ଅଭିଳାଷା ,
ଅନୂପ ପଦ୍ମରୁ          ମଞ୍ଜୁ ଲଳିତୁ ,
ଅକର୍ଷି ଗେହରେ          କେଶରୀ ଶିଶୁ ।
ଧାତ୍ରୀପାଶୁ ଆଣି          ବାଡେଙ୍କ ବାପେ ,
ଅର୍ପିଲେ ସାଙ୍ଗେୟ          ଗୁରୁଙ୍କ ପାର୍ଶ୍ୱେ ।
ଚଉଁସରୁ ଲିପି          କଲେ କୁମାର ,
ବୋଲାଇଲେ ତବେ          ବିଦ୍ୟା ଭଣ୍ଡାର ।
ବେଦଶାସ୍ତ୍ର ନିଚେ          ହେଲେ ନିପୁଣ ,
ସହିଲେ ଦର୍ଶଦା          ପ୍ରାଣ୍ଡକ ଗୁଣ ।

ସରସ୍ୱତୀ ବୃତ୍ତି ବଦନ ପଦ୍ମ ,
ଭଣ୍ଡିଲେ କଙ୍କଣା — ବକ୍ତ୍ର ତା ପଦ୍ମ ।
ଅଭ୍ୟାସ ସକାଶେ ରୌଦ୍ରରେ ଶର ,
କ୍ଷେପି କଲେ ପାର୍ଥ — କାର୍ତ୍ତି କଂକର ।
ଜନରକ୍ତ ଗ୍ରହ - ଗଣିତ ଟଙ୍କେ ,
ବହିଲେ କଳଙ୍କ - କମଳା ଅଙ୍କେ ।
ଗଙ୍ଗାନ୍ବୟେ ଶ୍ରେଷ୍ଠ - ଗଙ୍ଗ ଶେଖର ,
ଘେନିଲେ ସମସ୍ତ କଳିଙ୍ଗ କର ।
ଶିଲୋଚନାଭିଧ ବେଙ୍ଗୀ ନୃପତି ,
ରାଜ୍ୟମଦେ ହେଲେ ସଦା ଦୁର୍ମତି ।
ଗଙ୍ଗେଶ୍ବର ଧରା - କଣ୍ଟକ କାଟି ,
ରାଜରକ୍ତେ କଲେ କର୍ଦ୍ଦମ ମାଟି ।
ପଳାଇଲେ ସେନା ଶମନ ତ୍ରାସେ ,
ସ୍ବଗେ ରାଜଲକ୍ଷ୍ମୀ ଅସିଲେ ପାଶେ ।
ଲୁଣ୍ଠିତ କନକେ ମାଳାଦ୍ରପତି ,
ତୋଷିବାକୁ ଦୁବେ ବଢ଼ିଲା ଭକ୍ତି ।
ଚକ୍ଷୁ ଅନୁମତ ଉତ୍କଳ ପଥ ,
ନଦେଇ କହିଲେ "ଦେଖଁ ଦୁର୍ମତି ,
ରାଜଦ୍ରୋହୀ ମୁଣ୍ଡେ ପର ମୁକୁଟ ,
ମଣ୍ଡାଇବ ଅଣି ନରୁହିଁ କୂଟ ।"
ଏ ଉତ୍କଳ ଭୂମି ଦୃଢ ମୁଷଳୁ ,
ବାହାରିଲା ବାଣୀ ଚର୍ଣ୍ଣି ଅଧରୁ ।
"ମୁକ୍ତି ପ୍ରସ୍ରବଣ ଗାଲାତ୍ରିପତି ,
ସର୍ବ ସାଧାରଣ ଧର୍ମ ସମ୍ପତ୍ତି ,

ଉଚ୍ଚାରଣି, ଘରେ    ଧରି କମାଣ ;
ଧର୍ମ ରକ୍ଷା କରି    ବୀର ବିଧାନ "
ବୋଲି ଶ୍ରେଷ୍ଠଗଣ    ଭୁଜେ 'କେୟୁର,
ବାନ୍ଧି ପ୍ରସାରିଲେ    ବିଶାଳ ଉର,
ଅଗର୍ବ ଗରବ -    ସ୍ମିତ ଦନ୍ତୁର ।
ଅଧରେ ଧରିଲୁ    ଘନ ଶ୍ମଶ୍ରୁର ,
ବହିଲେ ଅଙ୍ଗରେ    ସ୍ୱର୍ଣ୍ଣ କବଚ ,
ଜୟଲକ୍ଷ୍ମୀଙ୍କର    କାଞ୍ଚନ ମଞ୍ଚ ।
ପୌରୁଷ କାଞ୍ଚନ -    ନିକଷୋପଲ ,
କୃପାଣ ଧଇଲେ    ବୀର ପ୍ରବର ।
କଳଙ୍କ ପଞ୍ଚକ    ତେଜ ତୁରଙ୍ଗ ,
ଅପାଙ୍ଗେ ଚଳାଇ    ସେନା-ତରଙ୍ଗ,
ଧ୍ୱଜଳ ଛାବରେ    ଦୋଳାଇ ଧରି ,
ଧୂଳରେ ଧୂସର    କରାଇ ଖରି ,
ଖୁର୍ଦ୍ଧି ନାରଦଣ    ସାଗର ତୀରେ ,
ଉପନୀତ ହେଲେ    ମନ୍ତ୍ରୀ ମନ୍ଦିରେ ।
ସ୍ମୃତି ଭଙ୍ଗି ମୁଦ୍ରା    ଲୋଟିଲେ ସୈନ୍ୟେ ,
ଲୋଟୁଥାଏ ପାଦେ    ସାଗର ଦୈନ୍ୟେ ।
ସ୍ୱଣୀକୃତ ଦଣ୍ଡ -    ଚର୍ମ୍ମ ଶୋଷଣୁ ,
ବହିଛ ଦରବ    -    ଅମ୍ବୁ ଲବଣୁ ।
ଏହିକାଳ ସେନା    ବେଳା ବନାନ୍ତେ ,
ଭେଟ ତୃଣିଭୂଲ୍ୟା    କଳଙ୍କ ପ୍ରାନ୍ତେ ,
ଶିବାସିର ବାସ୍ତୁ    -    ହେବ କୁପଣ ;
କହାଇଲେ ବାଉ    ଏବାମ୍ ପ୍ରଭ ।

ବିପୁଳ ବାହିନୀ ଘେନି କେଶରୀ ,
ଉଠାଇଲେ ମାର୍ଗେ କେଶରୀ ପରି ।
ଯେଉଁ ବଳେ ନିଶି କଲେ ସମର ,
ରଣ କ୍ଷେତ୍ରେ ଶତ୍ରୁ ହେଲା ମନ୍ଥର ।
ତୁଙ୍ଗଭେଦୀ ଦନ୍ତ — ଦଶନ କାନ୍ତି ,
ପଡ଼ିଲା ବେ କାନ୍ଧେ ଚାମୁଣ୍ଡ ପାନ୍ତି ।
କେତେ ବାମକରେ ଅର୍ଦ୍ଧ ଖଣ୍ଡିତ ,
ଶିର ଧରି ବୀର ହେଲା ପତିତ ।
ତାହା ମୁଖେ ଅଛି କୃପାଣ ରେଖା ,
ତୃଷ୍ଣା ଧୂମଲତା — ଯିଏ ଯା ଦେଖା ।
ପଦାଙ୍କ-ଶୋଣିତେ ଦନ୍ତେଶ-ଛାୟା ,
ଧରିଲା ଗମନ — ତ୍ରିଷଙ୍କୁ କାୟା ।
ଏ ଭୀମ ସମରେ ବୀର ଚୋଡ଼ଗଙ୍ଗ ,
ରଚିଲେ କୌଶଳେ ଅପୂର୍ବ ଭଙ୍ଗ ।
ଚୋଳଯୁଦ୍ଧେ ବାସୁ-ଦେବ ସାମନ୍ତ ,
ସୂତ ଦେଲେ ପୂର୍ବ — ଦୀକ୍ଷିତ ମନ୍ତ୍ର ।
ଝଞ୍ଜା ଉଠିଲା ହଟିବା ନାଦ ,
ପଳାଇଲେ ସେନା ମଣି ପ୍ରମାଦ ।
କଳିଙ୍ଗ ସୈନ୍ୟ ଅନୁଧାବନେ ,
ଭସାଇଲେ ଶତ୍ରୁ ରକ୍ତ ପ୍ଲାବନେ ।
ରଥୀ; ଅଧୋରଣ, ସାଦୀ ପଦାତ ,
ପଡ଼ି ଗଲେ ପଛେ ଘୋଡ଼ା, ହାତୀ ।
ଏକାମ୍ର କାନନ — ଶୈଳ ଶୃଙ୍ଗ ,
କଲା କେଶରୀଙ୍କ [illegible] ।

ମନ୍ତ୍ରୀ ଥିଲେ ଯେହୁ ଗୋଭଜ, ଗୋଭଜ ,
ସେ ହେଲେ ଦେଶର ଧର୍ମ ମନୁଜ ।
ମୁକୁଟ-ମାଣିକ୍ୟ- ମରକତ ହୀର ,
ସାମନ୍ତ ନୃପତି ମାନ ରଖିଛୁ ।
ନ ଥିଲେ ତାହାଙ୍କୁ — ଭୀତି ବ ଶିବା ,
ନ ଭକ୍ଷି ଲଗନ୍ତା ଉତ୍ଫୁଲ୍ଲ ଛୀବା ।
ମନ୍ତ୍ରି ଉତ୍କଳିଙ୍କ ସିନ୍ଧୁ ତରଙ୍ଗ ,
କଲେ ସୁରାସୁର — ଗରବ ଭଙ୍ଗ ।
ପୃଥ୍ବୀଶ୍ରେମ କୀର୍ତ୍ତି — ରଜନୀ-ପତି ,
ସହସ୍ର ସର୍ଗିଙ୍କ ପ୍ରମତ୍ତ ବନ୍ଦୀ ।
ବିପୁଳ ଧରଣୀ, ଅତୁଳ ବାଜି ,
ମିଳଇ ସାମନ୍ତ— ରାଜଶ୍ରୀ ରାଜି ।
ବୀରପଣ ଦେବ ଉତ୍କଳ ଧର୍ମ ,
କଲା କଳେବର ସୌଭାଗ୍ୟେ ଭରା ।
କାଂଶୀ କାଂଶ ସୀମା — ସେତୁ, ଦୁର୍ଗତି ,
ଶୁଙ୍ଗି ଅରଜଲେ ଜନାର - ପଟୁ ।
ଉତ୍କଳ - ବାହନୀ — ଦ୍ରବାକେ ଲୁଚି ,
ଭଜିଲ ଗଙ୍ଗାସ୍ଥ ଅନନ୍ୟା ପୁରୀ ।
ଗଙ୍ଗେଶ୍ୱରର ଦଳ ଅନୁଧାବନେ ,
ମହାରଥପତି ପଶିଲେ ବନେ ।
ଏରୂପେ ଗଙ୍ଗାରୁ ଗୋଦାମୀ ଯାଏ ,
ସେହି ଭୂମିକର ଉତ୍କଳ ସ୍ୱାଏ ।
ମହୋଦଧି -ତୀରେ କଳାତ୍ରି-ଶିରେ ,
ଶୋଭାଇଲେ ଶୁଭେ ମହାନନ୍ଦରେ ।

ଯାହା ଯୋଗେ ଥିଲ   ଉତ୍କଳ ଧର୍ମ ,
ବୋଲାଏ ଭାରତେ   ମୁକ୍ତି-ପଥର ।
ଯାର ପ୍ରତିଦ୍ୱନ୍ଦୀ   ଛଳ କାରଣେ ,
ଅଲାଜ ନଣ୍ଡ୍ର   ଛଳ-ଗହନେ ।
ଯେ ବିଜୟ ସ୍ତମ୍ଭ—   ଧର୍ମ ଭୂପତି ,
ଷାପି ଥିଲେ ଧରା   କର୍ଣ୍ଣ ସପ୍ରତି ।
ବୈଦ ଭ୍ରମୁ ବେଧାନ   — ଷଣାଙ୍କ ଶାଙ୍କେ ,
ଅନନ୍ତ ବରମା   ବସିଲେ ନାଙ୍କେ ।
ଚୋଡ଼ଗଙ୍ଗ ଙ୍କର   ସୁଯୋଗ୍ୟ ସୁତ ,
କାମାର୍ଣ୍ଣବ ଦେଲେ   ଉତ୍କଳ ପୂତ ।
ଦାରଭା ବଦାନ୍ୟ —   ଗୁଣେ ରାଧେୟ ,
ଖାର୍ଣ୍ଣ ଚନ୍ଦ୍ରୋଦୟେ   ଝକ୍ସି ଗାଙ୍ଗେୟ ।
ଭାମାର୍ଣ୍ଣବେ ମଣି   ଛତ୍ର ଏଛିଦ୍ର ,
ପୂର୍ଣ୍ଣ କୀର୍ତ୍ତି ଚନ୍ଦ୍ର   ଲଭେ ବୃଦ୍ଧି ଦ ।
ଦଶ ବର୍ଷ ମାତ୍ର   ଶାସି ସ୍ୱରାଜ୍ୟ !
ଗଲେ ମଣ୍ଡିବାକୁ   ସ୍ୱାରାଜ୍ୟ ଅର୍ଘ୍ୟ ।
ଅଗ୍ରଜ ଅପନେ   ବିଂ ରାଘବ ,
ଭରିଲେ ଭଣ୍ଡାରେ   ବହୁ ଦଉଳ ।
ଯାର ଗଙ୍ଗାଘାଟେ   ଶୁଣାନେ ଭୂପେ ,
ରଖିଲେ କୀରତି   — ସ୍ତୁପ ସ୍ୱରୂପେ ।
ପଞ୍ଚଦଶ ବର୍ଷ   ପାଳି ରାଘବ ,
ଝମୁକ୍ତେଜ ସମର୍ପି   ଗଲେ ଏ ଭବ ।
ରାଜରାଜ ବୌର୍ଗିମୀ—   ଶକ୍ତି ଶରୀରେ ,
ବହି ରାଜସ୍ୱଜ   ହେଲେ ମହୀରେ ।

ସାକ୍ଷୀମାତ୍ର ରହି　　　ରଣେ ବାହିନୀ ,
ଅଗ୍ରେ ଗୋଦା କୃଷ୍ଣା —　　ମଧ୍ୟ ମେଦିନୀ ,
କୃଷ୍ଣା କୂଳେ ରଚି　　　ଅମରା ବତୀ ,
ଭୁଞ୍ଜିଲେ ସାମ୍ରାଜ୍ୟ　　　ଅନ୍ଧ୍ର ବଂଶଜି ।
ଚୋଡଗଙ୍ଗଙ୍କର　　　ଚତୁର୍ଥ ପୁତ୍ର ,
ବଂଶଜନ ଚନ୍ଦ୍ —　　　ଲେଖାସ୍ମୃତ ।
ଅନିୟଙ୍କ ସେତୁ　　　ରାଜଶ୍ରୀ — ଅଙ୍କ ,
ରାଜନ୍ୟ — ମଣ୍ଡଳେ　　　ହେଲେ ଅତଙ୍କ ।
ଦଶ ବର୍ଷ ମାତ୍ର　　:　　ଶାସି ଉତ୍କଳ ,
ଅନୁଭବ କଲେ　　　କାଳ କବଳ ।
ଅବରୋଧ କଲ　　　ପିତୃ ଗୌରବ ,
କହୁ କ୍ରମେ ସର୍ବେ　　　ଭେଦଲେ ଭବ ।
ଅଜୟଙ୍କ ଦୀନ　　—　　ବାଘଲ୍ଲ ବଳା ,
ନେଲେ ରାଜସ୍ୱତ　　　ରାଜକମଳା ।
ବସ୍ତୁ ତାଙ୍କ ରାଜ୍ୟେ　　　ଦର ଅଶାନ୍ତି ;
ଉପସ୍ଥିତ କଲେ　　　ଯବନେ ମାଡି ।
ତର୍ଜି ଭାରତରୁ　　　ବଉଦ୍ଧ ଧର୍ମ ,
ଭୁକ୍ତିମାହିଁ ହ୍ରଦ　　　ଲଭେ ଶରନ ।
ଭଜି ନବଧର୍ମ　　　ଅରବଦେଶେ ,
ଧାଇଁଲ ଭାରତ　　　ଗ୍ରାସିବା ଅଶେ ।
ଧରି ହୃଦ ବଳେ　　　ବୋସ୍ତାନ ଖଣ୍ଡା ,
ଖଣ୍ଡାକୁ ହସିଲେ　　　ଶୁଣ୍ଡର ଲଣ୍ଡା ।
ଲବେ ଇଚ୍ଛା ଥିଲେ　　　ସେନ, ଭୋଷ୍କର ,
ଟିବେ ତଞ୍ଚ ଯେତେ　　　ତେଡଗ ଦାଙ୍କ ।

ଅନଙ୍ଗଭୀମଙ୍କ ରକ୍ଷଣେ ସଦା
ପଞ୍ଚ ସହସ୍ର ପଦାତି ସଦା ।
ଦଶ ସହସ୍ରରୁ ବଳ ସୈନ୍ୟରେ ,
ଭୀମ ବେଶେ ଉଭା ଦୁର୍ଗ ଦୁଆରେ
ସିନ୍ଧୁଦୁର୍ଗ ପ୍ରାନ୍ତେ ଯାଜ ନଗରୀ
ରାଜଇ ଯେସନ ଅପରୂପ କରି ।
ଷୋଡ଼ଶ ସାମନ୍ତ ପାର୍ଶ୍ୱେ ଦେଶେ ,
ବସିଲେ ଅନଙ୍ଗ — ଭୀମ ଆଦେଶେ !
ଜୟନାଦ ହେବା ଦେଖି ଅବାକ ,
ଦେବାଳୁ ଅସଂଖ୍ୟ ସାଜି ପଦାତି ।
ଏବେ ପ୍ରେସ ଅଟ୍ଟୋପେ ଶାସି ଉତ୍କଳ ,
କ୍ରମେ ବଳେ ଗୌଡ଼ — ଭୂମି ଜବଳ ।
ମଣି ଉତ୍କଳକୁ ବଙ୍ଗ ସମାନ ,
ଜଗ ଭୂପାଳଙ୍କ ମୁଗ ବଂଶଦାନ ।
ନସ୍ରତ୍ ଯବନେ ଉତ୍କଳ ସୀମା ,
ଦେଖାଇଲେ ଦସ୍ତୁ ଦସ୍ତୁ ମହିମା ।
ଧ୍ୱଂସି ଜାଲୁ ଜଗେ କ୍ରୂର ଉଦ୍ଭବ ,
ଉତ୍କଳ କ୍ଷେତ୍ରେ ରକ୍ଷି ସାଜି ପଦାତି ।
ସାମନ୍ତ ସମରେ ଦର୍ଶାଇ ପୃଷ୍ଠ ,
ଧାଇଁଲ ଉତ୍କଳ — ବାହିନୀ ଧୃଷ୍ଟ ।
କପି ମଦେ ମତ୍ତ ହୋଇ ଯବନେ ,
ଦୂର ହୁଅ ଭାବେଲେ ଅନୁଧା ବନେ ।
ଜାଗରିତ - ଗୀତ - ମୁକ୍ତା ଫଣିଙ୍କ -
ହାତେ ରଣେ ହେଲେ ଗୌଡ଼ ବାହିନୀ ।

ଶତ୍ରୁଙ୍କ ରବେ, ବାଜ     ଗଜ ନୁଦଣେ,
ସର୍ଘର କବଚେ,     ଖଣ୍ଡ ସ୍ୱନନେ ,
ଆସିଲେ ଗୌ ଦସ୍ୟୁ     ଓଡ଼ିଆମାଡ଼ି ,
ଭୀମ ଖଡ୍ଗ ଝଟକ     ଘଞ୍ଚଲେ ରଣ ।
ମାଣିଲେ ଯବନେ     ଝମ୍ପଟେ କରାଳ ,
ମାଡ଼ ଅଶ୍ୱ ଅସ୍ତ୍ର     ଦକ୍ ଚନ୍ଦ୍ର ବାଲ ।
ରଣୋନ୍ମାଦ ଛାଡ଼     ଯବନ ଭଗି ,
ଖେଦଲେ ବର୍ଣ୍ଣିକ —     ଲକ୍ଷ୍ମଣାବତୀ ।
ଲଟେ ଲକ୍ଷ୍ୟ ଦୃଷ୍ଟ     ଶତଳ ଫେଣା ,
ସନ୍ଧ୍ୟା କାଳ ବାରେ     ରଣ ଅଗଣା ,
କର୍ମ୍ମେ ମନ୍ତ୍ରି ହେଲେ     ଉପାନ୍ତ ଶାସ୍ତ୍ରୀ ,
ଉତ୍କଳ ନକୁଳ     ଆଘାତ ପାଇ ।
ନଲଭିଲେ କେହୁ     ଏଭୀମ ରଣେ ,
ପରିତ୍ରାଣ ଦନା     ଦସ୍ୟୁ ଶରଣେ ।
ଶରଣ୍ୟେ, ଯୂପସ୍ଥ     ଛାଡ଼ିଥି ଶିର ,
ଚନ୍ଦ୍ର ଦସ୍ୟୁ ପଦେ ,     ପଡ଼ ସୁଚିର ।
ଲଟେ ଭଗୀରଥୀ     ଗୌଡ଼ ଦଳ ସର୍ବ ,
ହେ ଦସ୍ୟୁ ହେ ଦସ୍ୟୁ     ବୋଲି ପଳାଇ ,
ଦସ୍ୟୁ ଦସ୍ୟୁ ମନ୍ତ୍ର     ମଣି ଭୂପତି ,
ପ୍ରାଣ ଘେନ ଗଲେ     ଲକ୍ଷ୍ମଣା ବତୀ ।
ଧାଇ ପ୍ରବେଶେ ଦସ୍ୟୁ —     ସେନା ମହତୀ
କଟି ଲକ୍ଷରେ     ଲକ୍ଷ୍ମଣାବତୀ ,
ଅବରୋଧ କଲେ     ଯୋଗ ପନରେ ,
ଆଦରେ କମ୍ପାଣ     ଦିଲ୍ଲୀ ଉଣ୍ଟରେ ।

ବାପୀ ,ପୁଷ୍କରଣୀ ସେତୁ, ଦେଉଳ,
କଲେ ଯଜ୍ଞା କର - ସ୍ୱରୂପେ ଠୂଳ ।
ଏରୂପେ ବେଦାଗ୍ନି - ବର୍ଷ ଉହିଲେ,
ରହିଲା କେବଳ କାଳ କବଳେ ।
ମାଧ୍ୱୀକ ମନ୍ଥର ଛୁନ୍ଦସ୍ୱ ପଦ୍ମ ,
ପୁରାଣ ପୁରୁଷ ସଉଧ ସଦ୍ମ ।
ଛାଡି ଗଲେ ଧରା ଧ୍ୱାନ୍ତି କରିଙ୍କୁ,
ଯା ଯଶେ ଉଜ୍ଜ୍ୱଳ ଏକାମ୍ର ଭୂଭୁ ।
ଲଙ୍ଗସ୍ୱଙ୍କର ମନ୍ଦିର - ମିତ୍ର ,
ନାହିଁ ଧରାତଳେ ଗୁଷ୍ମର ଚିତ୍ର ।
ଅନଙ୍ଗଭୀମଙ୍କ କୀର୍ତ୍ତି ସମୃଦ୍ଧ ,
ନରସିଂହ ଦେବ ଧରାଧିପତି ।
ଅବମାନନାରୁ ବଙ୍ଗନବାବ,
ନ ଭୂଲି ଦହିଲେ ପୁଣି ଅହବ ।
ବସୁଲ ବାହିନୀ ସେନା ଅଟୋପେ ,
ଉପଗତ ହେଲେ ଉତ୍କଳେ କୋପେ ।
ସାରରସ - ସିନ୍ଧୁ ଯୌଠ ଉତ୍କଳ ,
ତଷ୍ଣା କର୍ଣ୍ଣି ହୋଇ ସମରେ ବଳ ।
ଲୁଟ କରି କ୍ରମେ ଉତ୍କଳ ହଟେ ,
ଅକ୍ରମେ ସଭକ୍ତ ସାଧ୍ୱେନ୍ଦ୍ର ମଠେ !
ବିଷାଦ ଯବନେ ଗଲେ ଲେଉଟି,
ସବଳେ ବିଡ଼ମ୍ବ ଲପଟ ବୃତ୍ତି ।
ପରୀକ୍ଷାର୍ଥ ପୁଣି ଅର୍ପି ଉତ୍କଳେ ,
ଜନ୍ମଲକ୍ଷ୍ମୀ ମଣି ଯେଉଁଲେ ବଳେ ।

ରାଜ ଲକ୍ଷ୍ମୀଲୋଭେ ପଡ଼ି ତୁମ୍ଭ ରାଣ ,
ସାଧିଲେ ଉତ୍ସାହେ ଯାଜ ପ୍ରଧାନ ।
ବଙ୍ଗର ବୀରେନ୍ଦ୍ର ଗୌଡ଼ ଯବନେ ,
ଧାଇଁଲେ ଉତ୍କଳ -- ଜୟ ଲୁଣ୍ଠନେ ।
ଶୁଣି ପୁଣି ଦୂରୁ ସମର ଡଙ୍କା ,
ଗର୍ଜିଲେ ଉତ୍କଳ - ପୂରାଏ ଡଙ୍କା ।
ଉତ୍କର୍ଷ ଶ୍ରୀ ସେ ଲାଭ ଗ୍ରାମ ନଗରେ ,
ପଶିଲେ ଅରଣ୍ୟେ ଯବନ ଡରେ ।
ବାନପ୍ରସ୍ଥ ଦେଖି ଉତ୍କଳ ରାଜ୍ୟ ,
ସର୍ବାଙ୍ଗେ କମ୍ପିଲେ ଗାଙ୍ଗେୟ ରାଜ ।
ଉଠିଲ ନବୀନ କୋଣେ ଶୋଣିମା ,
ବାଡ଼ବଟ୍ଟୁ ବଳି ଯାର ବଢ଼ିମା ।
ସିଂହ ପ୍ରାଏ ନର - ସିଂହ ନିନାଦ ,
କଲେ ସାଧିବାକୁ ଦମନ ସାଧ ।
ବାଳ, ବୃଦ୍ଧ, ବାଳା, ଜନା ସମରେ ,
ସମସ୍ତେ ପଶିବେ ଉତ୍କଳ ଜବରେ ।
ନୃପାଦେଶ ମତେ ସ୍ୱଦେଶ ରକ୍ଷି ,
ଅସିଲେ ଉତ୍କଳେ ଶତ୍ରୁ ଦମ୍ଭ ଜାଗି ।
ଢାଙ୍କିଲେ ସେନାଏ ରଣ—ପ୍ରାଙ୍ଗଣ ,
ଜଳ ଜଳୋମାସେ ଯେସନେ ଘନ ।
ଧନ୍ୟ ସ୍ୱଦେଶୀର ପ୍ରଜା—ସନ୍ତୋଷ ,
ପ୍ରକାଶି କହିଲେ ଯବନ -ଦ୍ୱେଷ ।
ଯେ କଳଙ୍କ ବଳେ ଦେଇ କବଳ ,
କଲେ ଗଙ୍ଗବଂଶେ ତୁମ୍ଭ ଉତ୍କଳ ।

ଏବେ ଏମେ କଳିଙ୍ଗ ବଳ ଗୌରବ ,
ଅର୍ଜିଛ ତୁମ୍ଭର ହାନ୍ତୁ ହଉବ ।
ଯବନ - ଭବନେ ଉଡ଼ାଇ ଧ୍ୱଜା ,
ବଜାଇଲ ଯାହା ସମର ଡଙ୍କା ।
ଭୁଲି ବାକୁ ପୁଣି ସେ ଅପମାନ ,
ଦେଉଛି ଯବନ ଉପୁଜ ଯାନ ।
ପାଇଛ ସମରେ ପାଇଲେ ଜଉ ,
ହରିଲ ତୁମ୍ଭର ପବିତ୍ର କୀର୍ତ୍ତି ,
ଧନ, ଧାନ୍ୟ, ଧରା, ଧରମ, ଶେଷେ ,
ସାଜିବ ତୁମ୍ଭଙ୍କୁ ଯବନବେଶେ ।
ଶୁଣିବ ତୁମ୍ଭର ଶ୍ରୀମୁଖେ ଦାଢ଼ି ।
ଘର ବେଣୀ ସଙ୍ଗେ ଶିରଣୀ ଛାଡ଼ି ।
ଯୋଡ଼ାଇ ପୁରାଣ ବେଦ କୋରାନ ,
ଭାଙ୍ଗି ବାକୁ ପୂଜ୍ୟ- ଦେଉଳମାନ
ଘୋଷାଇବ ପୁଣି ଯାବନୀ ଭାଷା ।
କାହିଁ ଗଲେ କାହିଁ ଉତ୍କଳ - ଆଶା ।
ଉଠ ଏଥରକେ ବାନ୍ଧ ସାହସ ।
ଆମ୍ଭେ ଜାଣିବା ଯବନ - ବଂଶ ।
ମଧୁମକ୍ଷି ଠାରୁଁ ନର - ଜୀବନ ,
ହୀନ ସ୍ୱତ୍ୱ ତେଜ ହେବା ଯବନ ।
ଯେଉଁ ବୀର ବୃନ୍ଦ ସରଘା - ଧାଙ୍କା ,
ଦିଅ ଧର୍ଯ୍ୟ କି ଦଗଡ଼ ଶିକ୍ଷା ।
ହୋଇ ଗଙ୍ଗବର ଯଥି ଯଙ୍ଗରେ ,
ଲାଗନ୍ତୁ ସର୍ବେ କେ ରଣ - ରଙ୍ଗରେ ।

ଗାଇଲେ ଉତ୍କଳେ ଜାତୀୟ ଗୀତ ,
ଖେଳିଲେ ସମରେ ଶମନ - ଭୀତ ।
ପଠାଣ - ପରାଏ ଯବନ ଭୂପ ’
ଲଗାଇଲେ ଦେଇ ଅସହ୍ୟ ଝାଂପ ।
ବିଷମ ସମର — କାଲୀନ-କଳ୍ପ ,
ଚିତ୍ରିଲନ୍ତୁ ଭୀମ ସମର -ଚିତ୍ର ।
“ପଡ଼ି ବନ୍ଦୀଗାରେ ସର୍ବଦା ଶତ୍ରୁ ,
ଗୃହ ବୀରେନ୍ଦ୍ରର ଯବନୀବୃନ୍ଦ ,
ଧୂଆଇ କଜ୍ଜ୍ୱଳ ଲୋଚନ -ଜଳେ ,
ବହିଲେ ଜାହ୍ନବୀ ଯମୁନା, କଳେ ।
ଯବନୀ ବୈଧବ୍ୟ — ବିସ୍ମୟେ ଗଙ୍ଗା ,
ମଣେ ଲଳନାଙ୍ଗା ରକ୍ତ -ତରଙ୍ଗା”।
ଶୁଣିଏ ସମ୍ବାଦ ଦିଲ୍ଲୀଶ ସ୍ତବ୍ଧ ,
ହେଲେ ସନ୍ଧି ସୂତ୍ରେ ବନ୍ଧୁତା -ବଦ୍ଧ ।
ଭାରତ ବିଜୟୀ ଯବନେ ଜିଣି ,
ପ୍ରତାପ କାରଣୀ ଉପାଧି କିଣି ,
ପ୍ରଚଳନ କଲେ ଗାଙ୍ଗ ସଂବତ ।
ରଚିଲେ କୋଣାର୍କେ ସ୍ତୂପ ପର୍ବତ ।
ଶିଳା ଉତ୍ତୋଳନ ଯା କାରୁ କାର୍ଯ୍ୟ ,
ଚକିତ ଉଲ୍ଲୁପା - ଜଗତ ଆର୍ଯ୍ୟ ।
ଚୌଦଶ ବରଷ ଧର୍ମ-ପରଶ ,
ଦେଇଁ ନର ସିଂହ ଛାଡ଼ିଲେ ଧର୍ମ ।
ନରସିଂହ ପୁଣ୍ୟ ଭାନୁ ନୃପତି ;.
ନର ସିଂହ ନାମେ ରଖି ସନ୍ତତି ,

ଅଷ୍ଟାଦଶ ବର୍ଷ    ଶାସି ଉତ୍କଳ,
ଅକାଳେ ଲଭିଲେ    କାଳ କବଳ ।
ବସ୍ତାର ଉତ୍କଳେ    ମଧ୍ୟାହ୍ନ ପ୍ରଭା,
ବସିଲା ନୃସିଂହ — ନୃପତି ସଭା ।
ରଖି ଏ ମଧ୍ୟାହ୍ନେ    ଭାସ୍କର ଭାତି,
ଚଉବନ ବର୍ଷ -    ବ୍ୟାପି ରାଜତ୍ୱ,
ପଞ୍ଚବଙ୍ଗ ଦଳି — ସେନା ସହାୟେ,
ଆଣି ଖଡ୍ଗକୂଳ    ଉତ୍କଳ କାର୍ଯ୍ୟେ,
ମାତୃ ଶ୍ରୀକାଳିକ -    ଦେବ ଅଦେଶେ,
ଛତ୍ରାଙ୍କ ଶାସନ    ଦେବାକୁ ଦେଶେ,
ଦକ୍ଷିଣା ଥେରୁ    ଶୋଣିତ୍ୟେ ଡାକି,
ଲେଖି ଦେଇ    ତାମ୍ର ଫଳକ ସାକ୍ଷୀ,
ସୁଗ ନାରିକେଳ    ରସାଳେ ଛାଇଁ,
ଦେଲେ ଯୌଥାବନ    ଉତ୍କଳ ପାଇଁ ।
ଏରୂପେ ଉଜଳେ    ଗାଙ୍ଗେୟ କୁଳ,
ଭରି ନାନାକୀର୍ତ୍ତି    ପ୍ରତାପ ତୂଳ,
ଗଲେ ଉତ୍କଳରୁ    ଅଲକ୍ଷ୍ୟେ ଛାଡି ।
ପଶିଲା ଚନ୍ଦ୍ରମା ✽    କ୍ରମଶଃ ମାଡି ।

## ୧୦ମ ସର୍ଗ ।

( ରାଗ — ନଟବାଣୀ )

ନରସିଂହ ପରେ    ଶମ୍ଭୁଭ ନୃପତି,
ବାସୁଦେବ ପନ୍ଥ    ଲଭି, ବସୁମତୀ-

✽ ଅନଙ୍ଗ ଭୀମଙ୍କ ପ୍ରଦତ୍ତ କଟକ ଗଡ଼ଦ୍ୱାର, ଗୁଡ଼ଶ୍ଚେ-
ଶ୍ୱର ମନ୍ଦିର ଶିଳାଫଳକ, ସାଳେପୁର ତାମ୍ର -

ଶାସିଗଲେ ଶେଷେ ନେଇ ବାସୁଦେବ ,
ପୁଣ୍ୟ ଝରା ଅଶ୍ରୁ – ନୟନେ, ସତ୍ୱର –
ଡକାଇ କହିଲେ କୁମାର ଚନ୍ଦ୍ରମା ,
ଉଇଁବାକୁ ମୋର ବୃଦ୍ଧ ମଣ ଅମା ।
ବୃଦ୍ଧଷ୍ଟ-ଆଶ୍ରମ – ଧରମପାଦପେ ,
ନ ଫଳି ମୈଳିଲେ ସନ୍ତାପ ଆତପେ ।
ଅବ୍ୟାକ୍ତ ଅଲୀକ ସୁତହାସ ବନା ,
ଅନର୍ଘ ସମ୍ପତ୍ତି ହରିଲ ମୋ ଦୀନା ।
ନଥିଲେ ଉଭୟ — ଲୋକ-ବନ୍ଧୁବଳା ,
ଅଶ୍ୱମେଧ ଆଉ - ନିଦ୍ରା ନିମ କଳା ।
ମୋ ବିନା ରାଜଶ୍ରୀ ନଦେଖି ଆଶ୍ରୟ ,
ଗୁଣବୃକ୍ଷ ପକ୍ଷୀ — ଯିବ ଏ ଅଥୟ ।
ଏଣୁ କପିଳଙ୍କୁ ଘୋଷି ମୁଁ ଦତ୍ତକ ,
ବିହିଲି ଗାଙ୍ଗେୟ — ସନ୍ତାନ ସନ୍ତକ ।
ରବି କୁଳ ରବି ‡ ନାମେ କପିଳେନ୍ଦ୍ର ,
ମଣି ପଦୁହେଲେ ଉତ୍କଳ ନରେନ୍ଦ୍ର ।
ହନୁ ରାଜଲକ୍ଷ୍ମୀ — ଗର ସହଚରୀ ,
ଜୟଲକ୍ଷ୍ମୀ ରଣେ ବାହୀମଣି ଧରି ,
ସଙ୍ଗିତୁଲେ ଦିଗ୍ବି କରି ରାଜ କୋଷୁ ,
ଅପହୃତ କଲ ଅର୍ଥ ରାଜଦୋଷୁ ।

---

ଳର ସୁଗର୍ଭିର ପ୍ରାପ୍ତ ୬ ମ୍ବ ନରସିଂହଙ୍କ ବ୍ରହ୍ମଶାସନ ଶା-
ସନାନୁସାରେ ଗଙ୍ଗବଂଶଚରିତ ବିଭୁ ଉଦ୍ଧାର ଅଛି ।
‡ ଗୋପୀନାଥ ପୁର ଗୋପୀନାଥଦେବମନ୍ଦିରରଶିଳା-
ଲିପିରେ "ଭାସ୍କଂଶ ବଭଂସଂ" ଲିଖିତ ଅଛି ।

କପିଳେନ୍ଦ୍ର ଉପପତ୍ନୀ —      ପ୍ରେମ ବଶେ,
କଲା କଲେ ଭୁଲ      ପଡ଼ି ସୋମବଂଶେ।
ସ୍ୱକୁଳ ସୁଧାଂଶୁ      ଅଷ୍ଟାଦଶ ପୁତ୍ରେ,
ନିର୍ବାସିତ ହେଲେ      ଉପପତ୍ନୀ-ସୁତେ।
ରାଜଲକ୍ଷ୍ମୀ ଲଭି      ଶ୍ରୀପୁରୁଷୋତ୍ତମ,
ଖୋଜ ଅଭିମାନେ      ଛାଡ଼ି ଉଚ୍ଛତମ,
ଅଣିଲେ ଉତ୍କଳ ବଳ —      ଶାସ୍ୟ-ବନ୍ୟା,
ଗାଣପତ୍ୟ ବଶା      ରଣେ କାଞ୍ଚୀକନ୍ୟା।
ବୀରବଂଶ ସୁତା      ସତୀ ପଦ୍ମାବତୀ,
ବୀରପୁତ୍ରେ କଲେ      ଧୃତ ବସୁମତୀ।
କୋମଳ କମଳା —      କୋଳେ ପାରସ୍ୱତ-
ନିତାରେ ପ୍ରତାପରୁଦ୍ର      ହେଲେ ରତ।
"ପଥ୍ୟାପଥ୍ୟ ଦଶସ୍ତୃ"      ଯ ଗ୍ରନ୍ଥକାର,
ଦେଇ ଦଣ୍ଡନାଥେ      ସନ୍ତାପଣ୍ଡା ହାର,
"ପ୍ରତାପ ମାର୍ତ୍ତଣ୍ଡ"      "କର୍ଣ୍ଣପୃ ପରଭ"
"କଉତୁକ ଚିନ୍ତାମଣ୍ୟାଦି"      ଲ.ରଚୁ,
ଦରଶି ହାରଠେ      ରାଜଂକର ପଦ,
ଲଭିହେଲେ ପୁଣି      ଯୁଦ୍ଧ ବିଶାରଦ।
ଜିଣି ରଣେ ବୀର      ବିଜୟ ନଗର,
ଅଧିକାରେ ଅଣି      ସେତୁ ରାମେଶ୍ୱର;
ଅଗଣ୍ୟ ନଗରେ      ଜୟବୈଜୟନ୍ତୀ,
ଉଡ଼ାଇବା କାଳେ      ଡଗରେ ବଦନ୍ତି।
"ଝଣିମା ଯବନେ      ଅନ୍ଧିମ କଟକ,
ବାରବାଟୀ ଦୁର୍ଗ      କଲେଣି ଅଟକ।

କଟକ ଶାସକ ଅନନ୍ତସିଂହ ତ ,
ସାରଙ୍ଗଦୁର୍ଗରେ କାରାରୁଦ୍ଧ ବନ୍ଧୁ ।
ନୀଳାଚଳ ପତି ମ୍ଳେଚ୍ଛ ପତି ଡରେ ,
ଲୁକ୍କାୟିତ ଚଳନ୍ତା – ପର୍ବତ ଗହ୍ୱରେ" ।
ଏଣୁ ଉତ୍କଳେଶ , ଘୋର ଅନ୍ୟାୟେ ,
ବିଜୟ ନଗରପତି କୃଷ୍ଣ ରାୟେ ।
କରି କନ୍ୟାଦାନ – ଛଳେ ସନ୍ଧିବିଷୟ ,
ଧାଇଁଲେ ନୃପତି ଘେନି ସୈନ୍ୟଚୟ ।
ବିଦ୍ୟୁତ୍ ବେଗେ ବାରେ ଓଡ଼ିଶା ଆସିଲେ ,
ଘୋରତର ଯୁଦ୍ଧେ ଯବନେ ତ୍ରାସିଲେ ।
ଭୁଗାଲର୍ଗାଁ ବଳି ଲଭି ହୀନଦଶା ,
ହାରି ପଳାଇଲା ବଙ୍ଗେ ହୁସେନସା ।
ଯବନ ବିଜୟ — ସ୍ମୃତି କଲେ ସାଙ୍ଗ ,
ଟୋଳାଇ ବରାହ – ଦେବାଳୟ ଗାଙ୍ଗ ।
ମଣି ରଣ ସେନା – ସାୟଂକାଳ ଅତି ,
ଧର୍ମେ ରତ ରଣେ ଜହ୍ନାର ବିରତ '
ଅହିଂସା ପରମ – ଧର୍ମ ବୌଦ୍ଧମତେ ,
ରତ ହେବା ଦେଖି ସମ୍ରାଜ୍ଞୀ ସ୍ୱମତେ ,
ପଣି ସାର୍ଥକଲେ ସଧର୍ମିଣୀ ନାମ ,
ସ୍ମରଣ କରାଇ ନୀଳାଚଳ ଧାମ ।
ଏକାଳେ ଚୈତନ୍ୟ – ଚନ୍ଦ୍ର ନୀଳାଚଳେ ,
ପ୍ରଚାରି ସ୍ୱମତ ସଂକୀର୍ତ୍ତନ କଲେ ,
ଦେବାକୁ ବ୍ରାହ୍ମଣ୍ୟ , ବୌଦ୍ଧ ଧର୍ମ ହିଂସ ,
ଭକ୍ତି ରସେ ସିକ୍ତ — କଲେ ଭୂପତିଙ୍କି ।

ଜାର ଶ୍ରୀପ୍ରତାପ - ରୁଦ୍ରଙ୍କ ଅଦେଶେ ,
ଶୂଳଗଲେ ବୌଦ୍ଧ - ଗଣେ ପ୍ରେତବେଶେ ।
ମାନଙ୍କ ବ୍ରାହ୍ମଣ୍ୟ ସ୍ୱାର୍ଥଧର୍ମ ରଣେ ,
ପରମାର୍ଥ ସଙ୍ଗେ ଉତ୍କଳ ପ୍ରାଙ୍ଗଣେ ,
ରତ ହେଲେ ସଦା ଆତ୍ମରକ୍ଷା ଲାଗି ।
ବୁଦ୍ଧଙ୍କ ଗୌରବ ' ପ୍ରେତକ୍ରିୟା ଭାଗି ।
ଏରୂପେ ଭିଆଇ ଧର୍ମର ବିଧାନ ,
ହଇଲେ ପ୍ରତାପ - ରୁଦ୍ର ଅନ୍ତର୍ଦ୍ଧାନ ।
ହେଲେ ବୈଷ୍ଣବେ ବୌଦ୍ଧେ ମୌର୍ଯ୍ୟବନ୍ତ ,
ବୃନ୍ଦପୁଷ୍ଟ ବୃନ୍ଦେ ମନ୍ତ୍ରିକରେ ହତ ।
ପାଇଁ ରାଜଲକ୍ଷ୍ମୀ ମଧୁମକ୍ଷି-ରାଣୀ ,
ମଲେ ମନ୍ତ୍ର ମକ୍ଷି ହୋଇ ହଣାହଣି ।
ଏହିମ ଦୁର୍ଦ୍ଦିନେ ଦୀନା ରାଜରମା ,
ଝୁଲୁ କବନ୍ଧରେ ହରାଇ ସୁଷମା ,
ମୁକୁନ୍ଦ ଦେବଙ୍କ ଆଣି ଅବସାଦେ ,
ନଲଭଲ ଶାନ୍ତ ଅନ୍ତର ବିବାଦେ ।
ଜୀବାପଥ ପ୍ରଦୀପ - ପଡ଼ି ସେ ଉତ୍କଳ ,
ପ୍ରଦୀପି ତୋଳିଲେ ହର୍ମ୍ୟ ନବତଳ ।
ତୁଙ୍ଗ ଶିଖରଶ୍ରୀ ମନ୍ଦର ଭୋଳାଇ ,
ଅତଳ ସ୍ୱଚ୍ଛୋଦ ଛଡ଼ାଗ ଗୋଳାଇ ,
ଭରତ ତ୍ରିବେଣୀ - ତୀରେ ଜମ୍ବୁପୀଠ ,
ବସାଇଲେ ଦେହୁ - ଦେଶେ [illegible] ।
ଯଶଃପ୍ରଭା ଦେଲା ଚତୁର୍ଦ୍ଦିଗ ଛବି ,
ଉଦ୍ଭ୍ରାନ୍ତ ବେଳେ ଭୁବିଭୋଷୀ ଅବି ।

ମୋଗଲ-ଚନ୍ଦ୍ରମା    ହସ୍ତିନା ସମ୍ରାଟ ?
ଅକବର କାଳେ    ବଙ୍ଗର ସମ୍ରାଟ—
ଦମନ ସକାଶେ    ଦୂତ ହୁସେନଶାଁ ,
ସମାଦରେ ହେଉ    ପୁରୀପୁରେ ରଣ ,
ବଙ୍ଗର ନବାବ    ସଲ୍ଲମାନ ଭୟେ ,
ଧର୍ମଧନ ଭୟ —    ଯତ୍ନ ଅନୁନୟେ ,
ତୋଷି ଦିଲ୍ଲୀଶରେ    ଘେନ ସ୍ୱାଧୀନତା ,
ବହିଲେ ମାନସେ    ଉତ୍କଳେ ଅହଂତା ।
ନୃପଙ୍କ ଭାବେ    ଶାସିବାକୁ ବଙ୍ଗ ,
ଅସ୍ତ୍ରମି ଉତ୍କଳ    ଲଭି ରଣେ ଭଙ୍ଗ ,
ଛଳବଳ କୌଶଳ    କଣ୍ଟକେ କଣ୍ଟକ ,
ପାଇଲେ ଉପାନ୍ତି    ବଙ୍ଗ ନୃପଙ୍କ ।
ବଙ୍ଗକୁ ଅସ୍ତ୍ରମି    ମୁକୁନ୍ଦ ଶିବିରେ ,
ପ୍ରତାପଳ ଦାନେ ରତ    ଗଙ୍ଗାତୀରେ ।
ପଶିଥିଲା କଳି ଏକାଳେ    ଗୋପନେ ,
ସ୍ୱାଧୀନତା ଦେବୀ    ସୁଦୃଢ଼ ଭବନେ ।
ଛାଡ଼ିଥିଲା ଧର୍ମ    ଘେନ ସହଚର ,
ଦେଖି ଅଧର୍ମର    ଭୀମ ଅନୁଚର ।
ଛାଡ଼ି ଦେଇ ଦ୍ୱିଜେ    ସଂଯମ-ସାଧନା ,
କଲେ ଅନ୍ତରରେ    କାମ ଉପାସନା ।
କାମ-ଅନୁଚର    କ୍ରୋଧ,ଲୋଭ ,ମୋହ ,
ତଡ଼ାଇଲା ଶମ —    ଦମ-ତ୍ୟାଗ-ଦ୍ରୋହ ।
ହେଲେ ସଦା ମଦ    ମାତ୍ସର୍ଯ୍ୟ-ଅଧୀନ ;
ଭୁଲେ ବ୍ରାହ୍ମଣେ —    ସ୍ୱାଧୀନତା ଧନ ।

ଏକଛତ୍ର ପୃଷ୍ଠେ	କାହିଁ ବଡ ସାନ ,
ବୃଥା ଉପୁଜିଲା	ସାମନ୍ତ- ସମ୍ମାନ ।
ଯହିଁ ଆମନ୍ତ୍ରଣେ	ଘେନି ଗଡ଼ ଦିହା ,
ଫିଟିବାକୁ ବଧ	ଦପ୍ରେ ଛଡ଼ ବ୍ରୀଡା ।
ଗର୍ବ ଦମୋହର	ସାମନ୍ତେ ମନ୍ତ୍ରଣେ ,
କ୍ଷେପିଲେ ସ୍ୱର୍ଣ୍ଣି ଦ୍ୟେ	ଅଶେଷ ଯନ୍ତ୍ରଣେ ।
ଗଲେ ଗଙ୍ଗସିଂହେ	ସିଂହାସନ ଛଡ଼ ,
ବସିଲେ ଅବଶେ	ବୀରାସନ ମାଡ଼ ।
ହେସେରୁ ସଂକୋଚେ	ସାମନ୍ତ ନୃମଣି ,
ଗଞ୍ଜାଇଲେ ବଳେ	ନବକୃଷ୍ଣ ଖଣ୍ଡେଣୀ ।
ଏରୂପେ ବ୍ରାହ୍ମଣ,	କ୍ଷାତ୍ର ଈର୍ଷାନଳେ ,
ଜାଳିଦେଇ କଳ	ସହଚର ବଳେ ,
ଛିଥିଳ ଜର	ସୁଦୃଢ଼ ବନ୍ଧନ ,
ଜପୁଥିଲା ମନ୍ତ୍ର	କାଳ ଅବାହନ ।
ଅବକାଶ ପାଇ	ଉତ୍କଳ ପ୍ରାଚୀର ,
ଦୃଢ଼ପଦେ ବଇ	ଗଣ୍ଡାପୃଷ୍ଠ ଦ୍ୱାର ,
ପ୍ରେଷିଲା ଯବନେ	ଅଣିବାକୁ ଡାକ ,
ଉତ୍କଳ ପାଂଶୁଳ	କଳୀ ମନାଉଛି ।
ସ୍ୱନାମଧାରୀ ମାତ –	ଦେଖି ମାଂସ ଅଛା,
ମାରି ମହଶାଣ	ଗଣ୍ଡାପୃଷ୍ଠ ଜାହା ,
ଲୁଠାଗାରେ·	ପଲ୍ଲୀମାନ ସେନାପତି
ସେଇ ସଙ୍ଗେ	କଳାପାହାଡ଼ ଦୁର୍ମତି ,
ପାର୍ବତ୍ୟ ଅରଣ୍ୟ –	ମାର୍ଗେ ଦୁର୍ବାରେ ,
ଲୁଚି ଉପଗତ	ବାରବାଟୀ ଦ୍ୱାରେ ।

ଅଳ୍ପାୟାସେ ଅଳ୍ପ ରକ୍ଷିସେନା ହଣି,
ଅଦୃଶ ପ୍ରାଚୀର ତୋପେ ଦେଇ ଭଣି,
କୁମାରଙ୍କ ସଙ୍ଗେ ବନ୍ଦି କଲେ ରାଣୀ।
ଶୁଣି ଶୁଖିଗଲା ମହାନଦୀ-ପାଣି।
ଝାଉଁଳ ଧଇର୍ଯ୍ୟ ବିଷାଦେ ଉତ୍କଳ,
ଅନାବୃଷ୍ଟି କାଳେ ଯଥା କୃଷିକୁଳ।
ଦୁଃସମ୍ବାଦେ ଭଗ୍ନ- ହୃଦୟ ମୁକୁନ୍ଦ,
ଦୁଃଖେ ଅବସନ୍ନ ଯୋଦ୍ଧା ସେନାବୃନ୍ଦ,
ଉଦ୍ଧାରିବା ଲାଗି କୁଟୁମ୍ବ, କଳତ୍ର,
ଝଁପଡ଼ିଲେ ବକ୍ସି ଭ୍ରମରବର କଣ୍ଟକ।
ପଡ଼ିଲା ନାହିଁତ କଟକ ନେସରେ।
ଅଟକିଲେ ବୀର ଗୋହିରୀ କ୍ଷେତ୍ରରେ।
ଉତ୍କଳର ଭାଗ୍ୟ ଲାଗି ଲକ୍ଷ ବୀରେ,
ଦେଲେ ପ୍ରାଣପତ୍ର — ବୈତରଣୀ ତୀରେ।
ତଥାପି ଉତ୍କଳ — ଗୌରବ ବୃତ୍ତରୁ,
କଳା ପାହାଡ଼ର ପତାକା ଉଡ଼ଇ।
ଦେବ ଦେବୀ ସବୁ ଦେବ ଭବନରେ,
ଭାଙ୍ଗି ପଡ଼ିଗଲେ ଯବନ ଭବନେ।
ଏ ଅନର୍ଥବାଦେ ଛଳେ ଦେବେ ଇନ୍ଦ୍ର,
ରହିଲେ ପୂଜାରୀଙ୍କେ ଦେବାଳୟୁ ଉଭା।
ଏହି ଲାଗି ନେଇ ଝଙ୍କଣ୍ଡେ ପାରଦା,
ଭାଙ୍ଗିଥିଲେ କଳା- ପାହାଡ଼ ସରଧା।
ଦେବଦ୍ରୋହୀ କ୍ରୋଧେ ଦେବାଳୟ ହୁଡ଼,
କର ଅଛି ଥିଲ ଝଙ୍କରୁ ବାହୁଡ଼।

ଶୁଣିଲ ସକ୍ରୋଧେ ନୀଳାଚଳ ପତି ;
ଛାଡ଼ ନୀଳାଚଳ - କନ୍ଦର ବସତି ,
ଲୁଚିଲେ ଚିଲ୍ଲିକା- ଦ୍ୱୀପ ପାରିକୁଦେ ,
କରି ପାରିଲତା - କୁତ ବାଲିକୁଦେ ।
କ୍ରୋଧେ ଯେବେ ପଶି ଶରଣାଗତ ମୂର୍ତ୍ତି ,
ଚୂରିଲା ମନ୍ଦିରୁ ଦାନବ ପ୍ରକୃତି ।
ମର୍ତ୍ତ୍ୟ ବଇକୁଣ୍ଠେ ଅମର୍ତ୍ତ୍ୟ ବିଭୂତି ,
ଲୁଣ୍ଠିଲା ତଥାପି ନଲଭି ନିବୃତ୍ତି ,
ନେଇ ଦାରୁବ୍ରହ୍ମ ନିଷ୍ଠୁର ଯବନେ ,
ଦହିଲା ଅଦ୍ଭୁତ ଜ୍ୱଳନ୍ତ ଜ୍ୱଳନେ ।
କଳାପାହାଡ଼ର ବ୍ରାହ୍ମଣ ସନ୍ତାନ ,
ପାଶୋରି ନଥିଲା ବିଗ୍ରହ ସମ୍ମାନ ।
ଅନୁଭବି ଦେହେ ଘୋର ଅବସାଦ ,
ମଲେ ବହ୍ନିଜ- ଦହନ ପ୍ରମାଦେ ।
ଦାରୁବ୍ରହ୍ମ ମୂର୍ତ୍ତି ନିକ୍ଷେପି ଗଙ୍ଗାଜଳେ,
ପଳାଇଲା ମ୍ଳେଚ୍ଛ ଶରୀର-ବିକଳେ ।
ବାନ୍ଧବଣିଅରେ ଅଢ଼ାଇଶ ଜଣେ,
ଜିଣିଲେ ଯେ ଅର୍ଦ୍ଧ — ଲକ୍ଷ ସେନାଗଣେ ,
ଆହା ! ଏହାନ୍ତକେ ସେ ବୀରେ ନାହାନ୍ତି ,
ଉଦ୍ଧାର ଶୀର୍ଷରେ ଦଶାର ମହାନ୍ତି ,
ସ୍ୱାଧୀନ ଉତ୍କଳ - ପତାକି ଅର୍ପିଲେ ।
ଦଳଭାଙ୍ଗ ଲେପ — ସ୍ୱଣ୍ଟାର ଦହଲେ ।
ଅନାଥ ଖେଦରେ ନୀଳାଚଳ ଛାଡ଼ ,
ରହିଲେ ଭୁଜଙ୍ଗେ ଭୁଜଙ୍ଗ ଦହାଣେ ।

ନାହିଁ ଜଗନ୍ନାଥ - କରେ ଚକ୍ରଗଦା,
ଗୋହିରୀ ଟିକିରି — ଯୁଦ୍ଧେ ହାରେ ପଦା ।
ଏ ଭୀମ ଦୁର୍ଦ୍ଦିନେ ନିଷ୍ଠୁର ଶାସନେ ,
ରକ୍ତ ଅବିରତ ଦୁରନ୍ତ ଯବନେ ।
କଲେ ଯା ଉତ୍କଳେ ରାକ୍ଷସର ଲୀଳା ।
ସେ ଦିନ! ଶ୍ମଶାନେ ଜମ୍ବୁକର ଖେଳା ।
ମୃତକଳ୍ପ-ଜାତି ପଡ଼ିଛି ନିଃସ୍ୱନେ ,
କାମୁଡ଼ା କାମୁଡ଼ି ଯବନେ ଯବନେ ।
ଲଭେ ଅବକାଶ ଲଢ଼ିଲେ କେତିଲେ ,
ଯାରେ ସର୍ବସ୍ୱ କସ୍ତଲ କର୍ବଲେ ।
ଧର୍ମ୍ମଧନ ହିନ୍ଦୁ — ମନ୍ଦିର ପ୍ରାସାଦ ,
ପଡ଼ନ୍ତି ଭୂତଳେ ବଳ ସିଂହନାଦ ।
ଉଠନ୍ତି ଗଗନେ ଧରି ନବଦୀକ୍ଷା ,
ପ୍ରକାଶି ଯବନ — ପ୍ରତାପର ଶିଖା !
ପତିତେ ଦେଖି ଫିରବେ ଦେବସ୍ୱେ
ଢିପଲେ ଦେବଳେ ଲୋଭେ ଫିରନ୍ତି ।
ଭୟ ପ୍ରଦର୍ଶନେ ମାହାମ୍ମଦୀ ଦୀକ୍ଷା ,
କେତେ କଲେ ହିନ୍ଦୁ ମାଗି ପ୍ରାଣଭିକ୍ଷା ।
ଜନପଦେ ଜନେ ଶୃଙ୍ଖଳ ବଦନେ ,
ଛାଡ଼ିଲେ ସାଧ୍ୱସେ ନିଷ୍ଠୁର ଯବନେ ।
ଏରୂପେ ଯବନ — ଦଳନ୍ତେ ଉତ୍କଳ ,
ଥିଲେ ମାନେ ପ୍ରାଣେ ସର୍ବଦା ବିକଳ ,
ଧରିଲି ଧଇର୍ଯ୍ୟ ଗୌର-ସଂକୀର୍ତ୍ତନେ ;
ଭକତ ରାଜା— ତୃଣ ପାଷାଣେ ।

କ୍ରମେକ୍ରମେ ବଢି ପ୍ରାକୃତ କବିତା ,
ଅଚ୍ୟୁତ-ଅନନ୍ତ- ମାଳିକାଦ୍ୟ ଗୀତା ,
ଅପ୍ରାକୃତ ଜ୍ଞାନ ରୋପିଦେଉଁ ହୃଦେ ,
କଳ୍ପିବଂ ଅନାଇଁ ବସିଗଲା ମୁଦେ ।
କଳ୍ପିଲା ଆଳପେ ଅଶ୍ଳୀଳ କବିତା ,
ଛନ୍ଦ ଦେଇ ଶେଷେ ଦେଶହିତ ଚିନ୍ତା ।
ବନ୍ଧୁ ଏଥି ଶାନ୍ତ କଲଣ୍ଡ ସାମନ୍ତେ ,
ସମବେତ ହୋଇ ଏକତାର ମନ୍ତ୍ରେ ,
ମନ୍ତ୍ରୀ ବନାଇଙ୍କ ସନ୍ମାନ ରଖାଇ —
ସ୍ୱଉସାଙ୍କୁ ଟଙ୍କା ଦହିଲେ ଅଣାଇ ।
ସ୍ୱଜପଦେ ନାମ ରାମଚନ୍ଦ୍ର ଦେବ ,
ବନ୍ଧୁ ବୋଲାଇଲେ ଓଡ଼ଶା ଭୂଦେବ ।
ଦହିଲେ ସବାଇ — ଜୟସିଂହେ ଦୟା ,
ଲଭିଲେ ଖୋରଧା - କମଳ ଅଲଭ୍ୟା ।
ଅର୍ଥ ରାଜଲକ୍ଷ୍ମୀ , ଦାରୁ ବ୍ରହ୍ମପାଦ ,
ସେବିବାକୁ ନୃପ ମନେ କଲେ ସାଧ ।
ଯଥା ବ୍ରହ୍ମଣିଁ ଥିଲେ ଭୁଜଙ୍ଗରେ ,
ତଥା ଦବଲାଙ୍ଗ ନବ କଳେବରେ ,
ଭଜ ନବରୂପେ ନବୀନ ବିଧାନେ ,
ବିଜେ କରାଇଲେ ରତ୍ନ ସିଂହାସନେ ।
ଶ୍ରୀହେମ ଚନ୍ଦ୍ର ପୂର୍ଣ୍ଣଚନ୍ଦ୍ର ଦେହେ ,
ବିଳସିଲେ ପୁଣି ମାନସିକ ସ୍ନେହେ ,
ବିଂଶାଧିକ ଶତ ସାମନ୍ତ ଶାସକ ,
ବି ସହସ୍ର ପାଦ — ସେନାର ନାୟକ ,

ମହାରାଜ ଅଦ୍ଧ ଉପାଧି ଅର୍ପିଲେ ,
ଭୋଇନାମେ ବଂଶ ତବେ ଖିଆଇଲେ ।
ବଧିପ୍ରଭ ବନ୍ଧୁ ପରଲୋକୁଁ ହୀନ ,
ଭୋଇବଂଶ-ମାନ୍ଦ ତାହିଁ ଦରଦିନ ।
ତଦନୁଶାସକ ଯବନେ ସେଦନ ,
ଅସ୍ତ୍ର କରି କଲେ ଖୋରଧା ଅଧୀନ ।
ଅଧୀନତା-ଗ୍ଳାନି — ଛେଦନ ମାନସେ ,
କରି ଘୋର ରଣ ରାମଚନ୍ଦ୍ର-ବଂଶେ ,
ବନ୍ଦିଭାବେ କଲେ କଟକେ ନିବାସ ,
ନୀଳାଚଳ ଛାଡ଼ି , ଗଲେ ଶ୍ରୀନିବାସ ।
ଯବାଧୀନ କଲେ ଉତ୍କଳ ପରଜା ,
କର ଛନ୍ଦ-ଭଙ୍ଗେ ପରବର୍ତ୍ତୀ ରାଜା ,
ରତ୍ନସିଂହାସନେ ଖୋରଧା ଆସନେ ,
ବସାଇଲେ ବନ୍ଧୁ, ଭୋଇଙ୍କି, ସମ୍ମାନେ ।
ଏରୂପେ ଉତ୍କଳେ କରି କ୍ରୂରଖେଳା ,
ଭୁଞ୍ଜାଇ ଯବନେ ସ୍ୱତନ୍ତ୍ରର ଭେଳା ,
ସ୍ୱତଲକ୍ଷ୍ମୀ ଅର୍ପି ମହାରାଷ୍ଟ୍ର କରେ ,
ବାଣିଜିକ ପ୍ରାଏ ପଳାଇଲେ ଘରେ ।
ବର୍ଗିଜବେ ହେଲା ଉତ୍କଳ ପ୍ରାନ୍ତର ,
ଦେଖି ସ୍ୱଜନ୍ମଭୂ — ଲୁଣ୍ଠନ ମନ୍ଦିର ।
ଗ୍ରାମ ଗ୍ରାମ ଛାଡି ପଳାଇଲେ ପ୍ରଜା ,
ଅର୍ଜିଲେ କେବାହିଁ ଗଡଜାତେ ବାଞ୍ଛା ।
ଛାଡ଼ି ଜାଜପୁରେ ଦ୍ରଭକ୍ଷ୍ୟ ଚର୍ଚ୍ଚା ।
ଛାଡ଼ି ନାଗପୁରେ ପ୍ରଭ ଲକ୍ଷ୍ୟ ଖର୍ଚ୍ଚା ।

ସ୍ୱଜ ପ୍ରଭନାଥ ଅସି ନାଗପୁରୁ,
ଲେଉଠନ୍ତ୍ରି କେତେ କଟକ ଅଦୂରୁ ।
କଟକେ ଅଟକ କେହିଦସ୍ୟୁ ପଣେ ,
କ୍ଷଣେ ଅରଞ୍ଜଲେ ହୋଇ ଯାଏ ଜଣେ ।
ପଦବୃତ୍ତ ପ୍ରଭ — ନାଥସଙ୍ଗେ ଯୁଝି ,
ନବ ପ୍ରଭନାଥ ଗାର୍ଯ୍ୟ ନିଂବୁଝି ।
ରାଜସ୍ୱ ଅଦାୟ, ବିଚାର, ଶାସନ ,
ଯୁଦ୍ଧ କାର୍ଯ୍ୟ ବିଧି, ପ୍ରଭନାଥ ମନ ।
ଏ ଦୂରନ୍ତ କାଳେ ଖୋରଧା ଅସ୍ମନ ,
ବଳ ଦାୟାଦବେ କ୍ଷିମିତ ପ୍ରାଶନ ।
ଦେଇ ଗଡ଼ଜାତ ମରହଟ୍ଟା-ବଶେ ,
ଉଦ୍ଧାର ଖୋରଧା ନେଲେ ହୋଇ ବଂଶ ।
ଶେଷେ ଭାଗ୍ୟଦୋଷେ ମହାରାଷ୍ଟ୍ର-ପାଦ ,
ସେବିବାକୁ କରେ ହୋଇ ହେଲେ ବାଧ୍ୟ ।
ବିଜୁ ଗଡଜାତ, ଖୋରଧା, ସମରେ ,
ନ ମଣ୍ଡିଲେ କର ନାହିଁ ପଡେ କରେ ।
ଏକାଳେ ଅସିଲେ ପ୍ରାଚ୍ୟ ଦଗ୍ଧବସ୍ତୁ ।
ଲୁଣ୍ଠି ଉଡ଼ି ଗଲେ ମହାରାଷ୍ଟ୍ର ଦସ୍ୟୁ ।
ଅଶ୍ୱବାରେ ନେଇ ଦେଖିଲେ ଉତ୍କଳ ,
ନାହିଁ ଭୂମୀଶ୍ୱର ନାହିଁ କୃଷିବଳ ।
ଜଗିଛନ୍ତି ଗ୍ରାମ ଅପୂଜା ଠାକୁରେ ,
ହୋଇଛନ୍ତି ପ୍ରଜା ଶୃଗାଳ କୁକୁରେ ।
ଏସବୁ ଦେଖିଦେଖି ପଦଶ ଜଣିର ,
ହୋଲୁଛି ଅଛିଲେ ଦାଃଣ ପଣ୍ଡୁଣିର ।

ହିନ୍ଦୁ ଧର୍ମେ ଧନେ ଅଭୟ ଘୋଷଣା ,
ବହିଲେ ବ୍ରିଟିଶେ ହରଷ ଧୀଷଣା ।
ଯେ ଘୋଷଣା-ବଳେ ନୀଳାଚଳ ଇନ୍ଦୁ ,
ଅର୍ପିଲେ ନବୀନ ହଳକଳ୍ପନା ବିନ୍ଦୁ ।
କ୍ରମେ କ୍ରମେ ଆସି ଅସଂଖ୍ୟ ପରଜା ,
ନିଜ ନିଜ କ୍ଷେତ୍ରେ କଲେ ଶସ୍ୟ ସଜ୍ଜା ।
ଭୂଇଁୟା ସାମନ୍ତେ ଭୂମି ଅଧିକାର ,
ନେଲେ ଅଧୀନତା କରି ଅଙ୍ଗୀକାର ।
ହିନ୍ଦୁ ଗୌରଧାରେ ପଦାତଙ୍କ ସାଥ ,
ସାଧିଲା ଭୋଇଙ୍କ ରାଜତ୍ୱର ଗାଥା ।
ଭାଗ୍ୟେ ଭୋଇ ବଂଶେ ସ୍ୱଭା ଜନ୍ମପତ୍ରେ ,
ହେଲେ ଉତ୍କଳର ଶ୍ରୀମନ୍ଦିର ଛତ୍ରେ ।
ଏଭାଗ୍ୟ ଭୁଞ୍ଜନ୍ତେ କାହିଁ ସେହି କଷେ ,
ଥିଲେ ମହାରାଷ୍ଟ୍ର ଯବନଙ୍କ ବଶେ ।
ଜଗନ୍ନାଥଙ୍କର ଅସୀମ ମହିମା ,
କାହିଁ ଭାରତର ବ୍ରିଟନର ସୀମା ,
ସୁଯୋଗେ ସାଥିରୁ ଅଭ୍ୟୁଦୟ ହେଲ ,
ଛାର ହାଟେ ହାର ଯବନ କବଳ ।
ଦସ୍ୟୁଂ ଜସ୍ତରତା ଶ୍ୱେତଦ୍ୱୀପୀ ଏବି ,
ହିନ୍ଦୁ ଛତ୍ର ପଡ଼ ଦେଲେଣି ଚାଣିସି ।
ସାମ୍ରାଜ୍ୟବଭବେ ଆଜ୍ୟ ଅଭ୍ୟନ୍ତର ,
ଶାନ୍ତ ହୃଦେ ସ୍ୱକା ହେଣିଲେ କାତର ।
ସଂଗ୍ରହେ ଶାସି ଧର୍ମିକ ଉର୍ଦ୍ଧେ ,
ଲଭିଲେଣି ଶାନ୍ତି ଦରିଦ୍ର ପ୍ରବନ୍ଧେ ।

ଯବନ-ଯାମିନୀ — ଘନଘୋର ଅନ୍ଧାରେ ,
ଛତ୍ରେହଲ କଣ୍ଠ ପାଶ୍ଚାତ୍ୟ ସଂସ୍କାରେ ,
ହେଲେଣି ଦାସତ୍ୱ — ମୁକ୍ତିଦାତା ଗୁରୁ ,
ଏଥୁ ବଳି ଅନ୍ୟ ଅଚ୍ଛିଦ୍ରହେ ? ଉତ୍ତ୍ର ।
ବିଶାଳ ଭାରତେ ସଂକୀର୍ଣ୍ଣ ଉତ୍କଳ ,
ରେଳ ସଙ୍କୀର୍ଣ୍ଣତା ବନ୍ଧ ନବ ବଳ ,
ନବୋତ୍ସାହେ ହୋଇ ବ୍ରୀଟିଶ କିଙ୍କର ,
ଶିଖୁଅଛି ସଦା ସଦ୍ ଗୁଣ ନିକର ।
ତଥାପି ଦେଖୁଛି ପ୍ରତ ବେଶି ପୃଷ୍ଠ ,
ଲକ୍ଷ୍ମୀ ବିନା ଶ୍ରୀକ — ଅଲୋକେ ନିକୃଷ୍ଟ ।
ଉପସ୍ୱତ୍ୱ ବିନା ଜାତୀୟ ସମ୍ପତ୍ତି ,
ଲୋହିତ ନାହାନ୍ତି ଅତୀତ ଭୂପତି ।
କୋଟି କୋଟି ମାଣ ଜଙ୍ଗଲ ଅରଣ୍ୟ ,
ଶୂନ୍ୟ ହୋଇ ଅଛି ଶ୍ୱାପଦ ସଦନ ।
ତଥାପି ଉତ୍କଳ — ପରଜା ଶରଣ ,
ଧନ୍ୟ ରାଜ ଲକ୍ଷ୍ମୀ !! ଧନ ତବ ଧନ୍ୟ ।
କ୍ଷେତ୍ର ସଜାଇବା — ପକ୍ଷେ ଯେ ଅକ୍ଷମ ,
ସେ କାହିଁ ଗଗନ — ଉତ୍ତୋଳନେ କ୍ଷମ ।
ଧନ ଉପାଦାନ ପଥ ସର୍ବେ ଭଜେଣ ,
ବନ୍ୟପୁଷ୍ପ ବତ ବ୍ୟର୍ଥ ହେଲ ବନେ ।
ଯୌଥ ରାଜପଟ୍ଟେ ମତ୍ତ ମହାରଜା ,
କାହୁଁ ହେବ ଶିଳ୍ପ — ବାଣିଜ୍ୟ ଚାଳନା ।
ସାମାନ୍ୟ କମଳା — ସର୍ବ ରାଜଶ୍ରୀ ,
[illegible] ବଢ଼ିବ ସୁଷମା ।

ପାଶ୍ଚାତ୍ୟ ଅଲୋକ — ଅଲୋକିତ ସର୍ବ୍ୱେ,
ପ୍ରଜାସ୍ୱତ୍ୱ ଦାନେ ହେଲେଣି ଅଗ୍ରଗଣ୍ୟ ।
ଐକ୍ୟରେ ଦେବ! ଉତ୍କଳ ଉଠିବ ,
ସ୍ୱର୍ଗୀୟ ସମୃଦ୍ଧି, — କୁସୁମ ଫୁଟିବ ।
ଏପଲେ ଉତ୍କଳ ପ୍ରତିବେଶି ସଙ୍ଗେ,
ସମାସନେ ବସି ଆଳାପ ପ୍ରସଙ୍ଗେ ,
ଭାଷିବ ଗୋ ଦିନେ ପ୍ରାଚୀନ ଗୌରବ ,
ପ୍ରତିବେଶି-ପ୍ରଜା — ଅଧୀନତ୍ୱ ହରବ ।
ଏତିକ ଗୋଟି — କାବ୍ୟେ ମୋ ପ୍ରାର୍ଥନା ,
ପୂରୁ ଜଗବନ୍ଧୁ! ଉତ୍କଳ ବାସନା ॥
ଶୋକ ଘୃଣା ଗୁଷ୍ଟ — ହୃଦୟ କାତରା ,
ହେଉ ସହୃଦୟ — ମାତୃସ୍ନେହେ ସିକ୍ତା ।




Printed by D. Garnayak at
The Hitaishini Electric Machine Press
BAMRA